# ଶୁଦ୍ଧିପତ୍ର ।

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୩ | ୪ | ଥୂଳି । | ଥୂଳ |
| ୮ | ୨ | ରମ | ରମା |
| ,, | ୪ | ଅଧିଦେବତ | ଅଧିଦେବତା |
| ୧୯ | ୧୮ | ଗଢିଲ | ଗଢିଲେ |
| ୨୦ | ୭ | ବାଲ | ବାଳା |
| ୨୩ | ୨ | ଅଙ୍କୁଚ୍ୟୁତ | ଅଙ୍କଚ୍ୟୁତ |
| ୨୭ | ୭ | ଦୋଲେ | ଦୋଳି |
| ୩୨ | ୮ | କଲ୍ଲୋଳିନୀ କଳଭାଷୀ | କଲ୍ଲୋଳିନୀ-କଳଭାଷୀ |
| ୪୧ | ୧ | ବାରୁଣୀ-ଗଗନ | ବାରୁଣୀ-ଗଗନେ |
| ,, | ୮ | ଇନ୍ଦ୍ରମାଳା | ଇନ୍ଦ୍ରମାଳ |
| ,, | ୧୫ | ବାଳା--ମୃଗାକ୍ଷୀ | ବାଳ-ମୃଗାକ୍ଷୀ |
| ୬୩ | ୧୮ | ସହଚର | ସହଚରୀ |
| ୬୫ | ୩ | ଡିଂଥଣ | ଡିଥଣେ |
| ୬୮ | ୨୭ | ଯେଣିଁ | ଯେଣି ଦ୍ଧୀ |
| ୫୭ | ୧୭ | ପ୍ରବାଳ ନିକୁଞ୍ଜ ବୃକ୍ଷ | ଭାବଭାବୃଦ୍ଧ |
| ୫୯ | ୮ | ମୁଦ୍ରିତ | ମୁଦି (ପ୍ରପ) ଷାଦ-ମଳିନ-ମୁଖେ |

ମଣ୍ଡଳେଶ୍ୱର
ଅଧ୍ୟାପକ

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୬୦ | ୧୦ | ସଂଯାନିକ | ସାଂଯାନିକ |
| ୬୫ | ୫ | ବିପ୍ଦ ଦର କେଶରୀ | ବିପଦ୍-ଦର-କେଶରୀ |
| ୬୬ | ୧୮ | ରନ୍ଧ୍ର | ତାନ୍ଧ୍ର |
| ୬୭ | ୪ | ଜଗ୍ ଗୁପିଗୁପିକିଅ | ଜଗ୍-ଗୁପିଗୁପିକିଅ |
| ,, | ୭ | ଅସ୍ତ ଗମେ | ଅସ୍ତଗାମେ |
| ୭୧ | ୬ | କନକରମ୍ଭାଚରଣ | କନକ-ରମ୍ଭ-ଚରଣ |
| ,, | ୭ | ର୍ଷଈ | ଈର୍ଷା |
| ୭୯ | ୯ | ଅଣିଳ | ଅଣିଲ |
| ୮୩ | ୩ | ଗର | ମାର |
| ୮୭ | ୧ | ଚନ୍ଦ୍ର ସୁବା - ଶିର୍‌ଭାଜ | ଚନ୍ଦ୍ରାସୁବା - ଶିର୍-ଭାଜ |
| ୬୨ | ୮ | ବଶ୍ୱ - ଶିଳ୍ପ - ଶିଳ୍ପି | ବିଶ୍ୱ-ଶିଳ୍ପି - ଶିଳ୍ପ |
| | | ନିଶ - ଯେଗେ | ନିଶାଯୋଗେ |
| | | ସୁଦଗ | ସ୍ୱବାଗ |
| | | କୁନ୍ତଳାଗଣ୍ଡ | କୁନ୍ତଳା—ଗଣ୍ଡ |
| | | ନବୀନା | ନବୀନ |
| | | ଉଲ୍ଲସେ | ଉଲ୍ଲାସେ |
| | | କାନ୍ତକାନ୍ତ | କାନ୍ତାକାନ୍ତ |

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୯୩ | ୧୪ | ସ୍ପଷ୍ଟସ୍ଥ୍ୟ | ସ୍ପଷ୍ଟାସ୍ଥ୍ୟ |
| ୯୪ | ୭ | ସମ୍ଭେଗର | ସମ୍ଭୋଗର |
| ” | ୧୦ | ଶିଶୁ ହରଣ,କ୍ଷୀ | ଶିଶୁ — ହରଣାକ୍ଷୀ |
| ୯୪ | ୧୪ | ସୁଖ | ମୁଖ |
| ” | ୧୭ | ଯଥ | ଯଥା |
| ୯୫ | ୯ | ହୋଇଗଲା | ହୋଇଗଲ |
| ” | ୧୧ | ସେଢେ | ସୋଢେ |
| ୯୬ | ୫ | ପରକ୍ଷେ | ପରଖ |
| ” | ୧୧ | ବଖାଣି | ବଖାଣି |
| ” | ୧୨ | ବଷଦେ | ବଷାଦେ |
| ୯୮ | ୭ | ବସ୍ଥା | ବାସ୍ଥା |
| ” | ୧୦ | ଉତ୍କଳ ପଦ୍ମ | ଉତ୍କଳ — ପଦ୍ମ |
| ୧୦୦ | ୯ | ଅଲେକ୍ଷ୍ୟ | ଅଲକ୍ଷ୍ୟ |
| ୧୦୧ | ୧ | ସନ୍ଧବ | ସନ୍ଧବ |
| ” | ୨ | ଦାରକା — ଗୃଢ | ଦାରକାଗୃଢ |
| ” | ୧୮ | ବିଷାଦ ମଳିନ ମୁଖେ | ବିଷାଦ-ମଳିନ-ମୁଖେ |
| ୧୦୨ | ୨ | ମଣ୍ଡଳେ — ଶ୍ୱର | ମଣ୍ଡଳେଶ୍ୱର |
| ” | ୧୪ | ଅଯ୍ୟେଧନ | ଅଯ୍ୟୋଧନ |

।

# ଶୁଦ୍ଧିପତ୍ର

| ପୃଷ୍ଠା | ପଁକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୦୪ | ୧୩ | ତା ଶୋଭି | ସେ ଶୋଭି |
| ୧୦୫ | ୧ | ସଂଗ୍ରମେ | ସଂଗ୍ରାମେ |
| ୧୦୬ | ୮ | ଦ୍ୱପଦ କର କେଶରୀ | ଦ୍ୱପଦ - କର୍ -କେଶରୀ |
| ୧୦୮ | ୧୫ | ଛଦ୍ମାରୁ | ଛଦ୍ମାଳ |
| ୧୦୯ | ୭ | ଘେଣ୍ଟି | ଘୋଣ୍ଟି. |
| ୧୧୦ | ୧୯ | ଯକ୍ଷସେନୀ | ଯାଜ୍ଞସେନୀ |
| ୧୧୧ | ୧ | ବଶ୍ୟ ବନ୍ଦନ | ବଂଶ—ବନ୍ଦନ |
| ” | ୬ | ଯୋଗ୍ୟମୀନ୍ଦ୍ର | ଯୋଗ୍ୟପାନ୍ଦ୍ର |
| ୧୧୩ | ୪ | ବ୍ରହ୍ମାଣ୍ଡ କୁନ୍ଦର | ବ୍ରହ୍ମାଣ୍ଡ ମୁକୁର |
| ” | ୯ | ଆବର୍ଭବ | ଆବର୍ଭାବ |
| ୧୧୪ | ୧୦ | ତରଙ୍ଗୀଣେ | ତରଙ୍ଗୀନେ |
| ୧୧୫ | ୭ | ଗାଂଲେ | ଗାଇଲେ |
| ” | ୧୮ | ଯଯତି | ଯଯାତି |

# ଯଯାତି – କେଶରୀ ।

## ପ୍ରଥମ ସର୍ଗ ।

ମଗଧ-ନିବାସୀ ସ୍କନ୍ଦ ବଂଶ-ଜାତ
ଯାମଳ ଭାଇ ଭଗିନୀ
ଯଯାତି କମଳା ପ୍ରବେଶିଲେ ଆସି
ବଙ୍ଗେ ଯହିଁ ପ୍ରବାହିନୀ-
ଗୋନାସା-ପ୍ରଭବା ଶ୍ରୀବିରଜା-ଦେବୀ-
ଦେଉଳ-ପାବଚ୍ଛ ଧୋଇ,
ନୀଳ ଘନ ବନ- ଲକ୍ଷ୍ମୀ ସମ୍ମୁରେ କି
ମଣି-ଦରପଣ ଟିଥାଇ ?
ଭୂଧର ଉଙ୍ଗୁର— ବାଲାସନ୍ଧୁ ଘସି
ଧବଳ-ଫେଣ-ନିବହେ
ଯା ଶାଶ୍ୱତ-ସ୍ରୋତ ଶାଶ୍ୱତ-ଶଇଳଙ୍କୁ
ଶାଶ୍ୱତ-ସିନ୍ଧୁକୁ ବହେ ,
ମାଲମାଳ ହୋଇ ନୀଳଦେହେ ଯାର
ଗୃହହଂସେ କ୍ରୀଡୁଥାନ୍ତି ,
ବ୍ୟୋମଚାରୀଙ୍କର ମନେ ଉପୁଜାଇ
ମଲ୍ଲିକା-ମାଳର ଭ୍ରାନ୍ତି ,
ଯା ଘାଟରେ ମଧ୍ୟାହ୍ନ- ତାପେ ଦଗ୍ଧ ହୋଇ
ରଙ୍ଗେ ଅଙ୍ଗ ଲୁଳା-ପଦ୍ମେ

ଦୋଳୁଥାନ୍ତି ସୁର ବାଳା ଲତାଦୋଳେ
ରକ୍ତାଶୋକ-ଲତା ସଙ୍ଗେ,
ବନଦେବୀଙ୍କର ଅଭିସାର-ଲୀଳା
ଚାଲୁଥାଇ ଅବିରତେ
ଚନ୍ଦ୍ରାଲୋକେ ଯାର ଅଭ୍ର-ଝଲକିତ [୧]
ବିଶାଳ-ଶୁଭ୍ର-ସୈକତେ ,
ତରୁ-ବୃକ୍ଷଙ୍କର ପ୍ରେମେ ବନ୍ଧାବନ୍ଧ,
ଛନ୍ଦାଛନ୍ଦି, ଯେନାଯେନ—
ଯୋଗୁଁ କୁଞ୍ଜ-ପୁଞ୍ଜେ ଅନ୍ଧାରିତ ଯାର
ଠାବେ ଠାବେ ନୀଳ ବେଣୀ,
ଦେବ ଯଜ୍ଞ-ଭୂମି ଶୋଭିତ ଯାର ସପ୍ତ-
ମାତୃକା-ମାଳଣୀ-ପୂତ , (୨)
ସିକ୍ତ ଜଳ ବକ୍ଷେ ଶ୍ରୀବରାହ ରୂପୀ [୩]
ବସନ୍ତ ଯାର ଅଚ୍ୟୁତ ।

---

( ୧ ) ଅନେକ ନଦୀର ବାଲୁକାରେ ଉଜ୍ଜ୍ୱଳ ଅଭ୍ରକଣା ମିଶ୍ରିତ ଥିବାର ଦେଖାଯାଏ ।

( ୨ ) ଐନ୍ଦ୍ରୀ, କୌମାରୀ, ବାରାହୀ ପ୍ରଭୃତି ସପ୍ତ ମାତୃକାର ମନ୍ଦିର ବୈତରଣୀ ତୀରରେ ଅବସ୍ଥିତ । ଏହି ମୂର୍ତ୍ତି ଏବଂ ଶୁଭସ୍ତମ୍ଭ ଯାଜପୁରର ପ୍ରଧାନ ପ୍ରାଚୀନ ଦୃଶ୍ୟ ଅଟେ ।

( ୩ ] ବରାହନାଥ ଯାଜପୁରର ପ୍ରଧାନ ଦେବତା । ଏହାଙ୍କ ମନ୍ଦିର ବୈତରଣୀ ବକ୍ଷରେ ଅବସ୍ଥିତ ।

ସରାଗେ ମୃଗୀଏ ଢଦ୍ୱରୁଣ ଥାନ୍ତି
ଘାରେ ଯାଉ ଚଉ ବୁଲି ,
ପଦାଙ୍କ ଛାଙ୍କର ପୂର ଦେଖିଥାଇ
ଚୂତ ମୁକୁଳର ଧୂଳି ।
ଅନୁକ୍ଷଣେ ମଦ— ମତ୍ତ ପିକ-ବଧୂ-
ବଧୂନନେ ଭ୍ରମେ ଦୂର ,
ପାଦ ଚିହ୍ନ ଅନୁ— ସାର- ଢଷାଦର
ଶଙ୍କା କେଉଥାଏ ଡର ।
ଏବେ ଯା ନଗରୀ ଥିଲା ଅଗେ ତାହା
ମହା ନକ୍ଷାଏନ ସ୍ଥଳ ,
ଦଦଙ୍ଗ-ସଙ୍ଗୀତେ ପୂର୍ଣ୍ଣ ନାଗା ଢାଢ
ଛରୁ—ଲତାରେ ଗହଳ ।
କଷ୍ଟଫେନ-କଣ୍ଠ— ତାନପୁରା ଛନ୍ଦେ
ବାଜୁଥାଇ ଦନଯାକ, (୧)
ଦନ ଅନ୍ତେ ପୁଣି ଧରୁଥିଲେ ତାନ
ଚନ୍ଦ୍ରବାକୀ ଚକ୍ରବାକ,—
ହ୍ରଦହୃଦଲଅ ମାଳେ ମାଳେ ନଭେ
ପ୍ରକାଶି ହଚାର ଛନ୍ଦ

(୧) ବନଭୂମିର ଗୋଟିଏ ପ୍ରଧାନ ଗାୟକ । ବଙ୍ଗୀୟ ନାମ "ବଉକଥାକଓ" ।

ରତ୍ନିଥିଲେ ରଙ୍ଗେ        ନବ—ଜୀମୂତର
ମୁହୂର୍ତ୍ତ—ମଣ୍ଡନ ଧନୁ ।
ମେଘାଗମେ ଯହିଁ        ପୁଷ୍ପିତ—କଦମ୍ବେ
ଶିଖଣ୍ଡି—ତାଣ୍ଡବ-ରଙ୍ଗ
ଦେଖି ଅସୁଥିଲି        ପ୍ରଭେ ଇନ୍ଦ୍ରଜାଲ
ଭ୍ରଅଇ'ଛି କି ଅନଙ୍ଗ ?
ଶାରୀ, ଶୁଆ, ଶ୍ୟାମା        ଭୃଙ୍ଗ, ଚଷାପୂଅ
ଦହିଆଲି , ପୁଣି ମୁନିଆ ,
ନେଟେବାସ୍ତୁକ କଣ୍ଠେ — ସ୍ୱର ବାନ୍ଧୁଥିଲେ
ସେ ବନେ ମୋହ ଭୁଣିଥ ।
ନୀଳଘନ-ବ୍ୟୋମ-        ନକ୍ଷେ ଚଳଦୀ-
ବସନ୍ତ ସ୍ୱକାନ୍ତ—ସୁନା ,
ସୁକ୍ଷୁମୂର୍ତ୍ତି କଷି        କରୁଥାଇ ବାର-
ବାଣୀ ସୁନା ଦର୍ପ ଚୂନା ।
ନଦୀକୂଳ—ବନ୍ଧୁ        ସୁଖେ ବସା ବାନ୍ଧି
ନଦୀକୂଳ—ତରୁ—ଡାଳେ
ଦରଜା ଦେବୀଙ୍କ        ବୈତାଳିକ- ରୂପେ
ଗାଉଥାଇ ଯଥାକାଳେ ,
ଝିଙ୍କାରୀଅ-ଗୁମ୍ଫା—        ତରୁ ନିକୁଞ୍ଜେ
ଶୁଭୁଥାଇ ଅନୁକ୍ଷଣ

ବନଦେବୀଙ୍କର ଝୁଣ୍ଟିଆ ପଞ୍ଚୁଏ
ଝିଙ୍କାର-ଝଙ୍କାର-ସ୍ୱନ ,
ମନ୍ଦ ଗନ୍ଧବହ ଦୋହଲାଉ ଥାଇ
ପଲ୍ଲବ—ପୁଷ୍ପ—ମୁକୁଳ ,
ହେଉଥାଇ ପ୍ରତେ ନନ୍ଦନ କି ସତେ
ହୋଇ'ଛି ଏ ବନେ ଠୁଳ ,
କିଅବା ମର୍ତ୍ତ୍ୟକୁ ଆସିଛି ଓହ୍ଲାଇ
ଅଳକାପୁରୁ ବୈଭ୍ରାଜ ? (୧)
ଅବା ଗନ୍ଧାଧର ଗୁପତେ ରଖିଛି
ପୁଷ୍ପାକର ଋତୁରାଜ ?
ଚମ୍ପା, ନାଗେଶ୍ୱର, ପାଟଳୀ, ବକୁଳ,
ମୁଚୁକୁନ୍ଦ, ତମାଳାଦି—
ତରୁଏ ପ୍ରସୂନ— ପଲ୍ଲବ—ଗନ୍ଧଲେ
ସ୍ଫୀତ ଥିଲେ ଅଗ୍ରାଦି ,
ଅସଙ୍ଗତ ଯେବେ ନୃତ୍ୟନ୍ତି ମତ୍ତତେ
କ୍ଷୁଦ୍ରର ଭୂଲା—ପ୍ରସଙ୍ଗ ,
କୁରଅନା-ସ୍ପୃଷ୍ଟ— ସଂବୃତ—ପିଷଙ୍ଗ
ଏକମାତ୍ର କାଉଡଙ୍ଗ । (୨)

---

(୧) ବୈଭ୍ରାଜ—କୁବେରଙ୍କ ବହୁରୁଚ୍ୟାନ ।

(୨) କାଉଡଙ୍ଗ—ଏ ବନ କଟକରୁ ନଦୀଶତ ଦୂରରେ ମହାନଦୀର ଦକ୍ଷିଣକୂଳରେ ଅବସ୍ଥିତ । ଚମ୍ପା ତମାଳ ,

ସତ୍ୟରେ ଏ ମର୍ତ୍ତ୍ୟ- ନନ୍ଦନର ଏକା
କୁଞ୍ଜଅନ୍ତ୍ରା ଏବେ ତୁଳନା ,
ମାତ୍ର ଏ ତୁଳନା ଅଶୋଭନ ସିନା
ଯେସନ ଶ୍ରୀଅଙ୍ଗେ ଚଣା ।
ଶ୍ରୀଦ୍ୱାରକା ଦେବୀ- ମନ୍ଦିର ସନ୍ନିଧେ
ଯାମଳ ଭଉଣୀ ସଭ
ଅଛ ନନ୍ଦାଖ୍ୟେନ ଦ୍ୱଜନେଲେ ଶକ୍ତି-
ସେବନେ ମତ୍ତ ବଲାଇ ,
ଏକରୂପ ଏକ- ବେଶ ଦେମଙ୍କର
ନଥିଲା ଭଲେ ବିଶେଷ ,
ପୁଂସ ପ୍ରାଏ ସଦା ବିମଳାର ବେଶ ,
ପୁଂସ ପ୍ରାଏ ଥିଲା କେଶ ,
ଶିକ୍ଷାଙ୍ଗେ ବେନି ବାଲ୍ୟେ ଲଭିଥିଲେ
ଅସ୍ତ୍ର ଚାଳନାରେ ସିଦ୍ଧି ,
ଚମୂଥିଲେ ଦ୍ୱନ ସେ ମହା ଦ୍ୱଜନ —
ବନେ ଅଚର ପାରଧି ;
ଖେଳୁଥିଲା ନବ — ଲାବଣ୍ୟ-ତରଙ୍ଗ
ଅଶୋକୀ — ଅଶୋକ କାନ୍ତେ,

---

ହାଟେଶ୍ୱର , ଅଶୋକ କୁଣ୍ଡ ଥିଲା ବିଶେଷତଃ କୁଣ୍ଡଥିଲା ବୃକ୍ଷରେ ଏବନ ପରିପୂର୍ଣ୍ଣ । ବନର ଦୈର୍ଘ୍ୟ ୩ କୋଶ ଏବଂ ପ୍ରସ୍ଥ ଅର୍ଦ୍ଧ କୋଶ । ବହୁକାଳ ପୂର୍ବେ ସମ୍ଭବତଃ ଏ ଗୋଟିଏ ଉଦ୍ୟାନ ଥିଲା ।

ପାଉଥିବ ବେଳେ    ବଣୁଥିଲେ ଜନେ
ଅଶ୍ୱିନୀ କୁମାର ପ୍ରାଏ ,
ତରୁଣ-ପୁନ୍ନାଗ—    ଉର ପ୍ରାଏ ତନୁ
ମସୃଣ ସ୍ନିଗ୍ଧ ଉଜ୍ଜ୍ୱଳ ,
ଏକ ବୃନ୍ତେ ବେନି-    ପୁଷ୍ପ ଦ୍ୱ ସେ, ଏକ
ମୃଣାଳେ ବେନି କମଳ ?
ମାତୃହୀନ ବେନି,    ଦାରୁଣ ସାବତ—
ମାତାର କ୍ରୂର ମନ୍ତ୍ରଣେ
ସିଂହାସନ—ଭାଗୀ    ଛାଡ ହୋଇଥିଲେ
ଭାଗ୍ୟେ ତାଙ୍କ ଜୀବନେ
ଯେଣୁ ନିଜ ଦେଶେ, ସେ ତେଣୁ ତଦ୍‌ଦେଶେ
ଅସିଣ ଥିଲେ ପଳାଇ ,
ଭାଗ୍ୟକୁ ଆଦର    ପଡୁଥିଲେ ତହିଁ
ଦେବୀ—ପାଦ—ପଦ୍ମ ଆଶେ ।
ଥିଲେ ଏହି କାଳେ    କପାଳେଶ—ଦୁର୍ଗେ
ହିରଣ୍ୟ—ବର୍ମ୍ମ ଭୂପତି ,
ଉତ୍ତର-କୋଶଳେ    ଟେକାଇଲେ ଯେହୁ
ଯଶୋରୂପ ଶ୍ୱେତଛତି ,
ଲଳିତା ବିହାର    ଏକମାତ୍ର ସୁତା
ରୂପେ ଗୁଣେ ଅନୁପମା ;

ନାରାୟଣ—ବକ୍ଷ— ଶୋଭା ମଣ୍ଡପୁରେ
ଅବତୀର୍ଣ୍ଣ କିବା ରମା ?
ଅବା ମର୍ତ୍ତ୍ୟେ ବଙ୍କେ ଅମର୍ତ୍ତ୍ୟ-ଲାବଣ୍ୟ-
ନାଥର ଅଧିଦେବତା ,
ମଦନର ଜୈତ୍ର- ଅସ୍ତ୍ର ମଦାଲସୀ ,
କିମ୍ବା ରୂପକଳ୍ପଲତା ;
ବିଜ୍ଞା ଗୁଣୀଙ୍କର ନୟନ-ପିତୁଳା
ଥିଲା ସେ ରାଜଦୁଲଣୀ ,
ଫୁରୁଥିଲା ତାର ଉଚ୍ଛଳି ବେଳକୁ
ଯୌବନ ଯୌବ ବାସନା ,
ସୁକୁମାର କଳା ସଙ୍ଗେ ଶସ୍ତ୍ର-ବିଦ୍ୟା
ଶିଖିଥିଲା କଳାବତୀ ,
ମୃଗୟା-ବିହାରେ ଅନୁକ୍ଷଣେ ତେଣୁ
ବଳାଉଣ ଥିଲା ମତି ,
ମୃଗୟା-ବିହାରେ ସଖୀ ସଙ୍ଗେ ଦିନେ
ବୈତରଣୀ-ତୀର - ବନେ
ପ୍ରବେଶି ସୁକେଶୀ ଦରଶନ ଲାଗି
ଗଲା ଦେବୀଙ୍କ ସଦନେ ,
ପାରିଧି ପକାଏ ବିମଳା ସେହନ
ଯାଇଥିଲା ବହୁଦୂରେ ,

ପୁଷ୍ପ ତୋଳି , ନାରୀ ଗୁନ୍ଥୁଥିଲେ ବସି
ଯଯାତି ଦେବୀ ସମ୍ମୁଖେ ,
ଫୁଲ ଗୁଚ୍ଛ ଗୁଚ୍ଛ ଚକିତେ ସହସା!
ଦେଖିଲା ଯୁବା—ମଣ୍ଡଳି
ମୃଗୟାର ବେଶେ ଅଗ୍ରେ ଉଭା ଆସି
ଅପୂର୍ବ—ଶୋଭା—ପିନ୍ଧୁଲି,
ବେଗେ ଲୁଚିଯାଇ ଦେଉଳର କୋଣେ
ସଙ୍ଗିନୀ—ଦଳେ ବାଳିକି
ଦେଖି , ସେହିକ୍ଷଣେ ବିନାମୂଲ୍ୟ ନାଗ-
ହୃଦୟଙ୍କୁ ଦେଲେ ବିକି ,
ଅସମ୍ଭାଳେ ତାର ● ମନ ଲାଗି ଗଲା
ମୋହିନୀର ମନ୍ତ୍ରାନନେ ,
ଲୌହ ଯଥା, ଅହା , ଅୟସ୍କାନ୍ତମଣି-
ଶଲାକାର ଆକର୍ଷଣେ ,
ସବୁ ସୁନ୍ଦରୀଏ ସଜହୋଇ ଥିଲେ
ମୃଗୟାର ପରିଚ୍ଛଦେ ,
ଅଙ୍ଗ ଢଙ୍ଗେ ଯେତେ ଅଳକା ବୋଲାନ୍ତି
ହୋଇ'ଛୁ ଦ୍ୱିରଦ-ରଦେ ,
ରବିକର ପ୍ରାଏ ଝଲେ ଗଣ-ବଣା-
ଏଣି—ଦୃଶାଙ୍କର ଭୁଷା ,

ରଙ୍ଗ-ଅଙ୍ଗ-ହାଣେ  ଆବୃତ ସବବେ,
  ରଙ୍ଗଘନେ ଯେହ୍ନେ ଉଷା ,
କଣ୍ଟକେ-ମୃଣାଳ  ପ୍ରାପ୍ତେ ବରଭୁଜ-
  ଯୁଗ୍ମ ଶୋଭେ ଧନୂ ଘାରେ ,
ପୃଷ୍ଠେ ଦୋଳେ ବେଣୀ,  ହେମ କଟିବନ୍ଧ
  ଝଟକେ କୃଶ—କଟିରେ ,
ଯୌବନର ମାଠେ  ମଠା ଦୋଇ ଅଙ୍ଗ-
  ଯଷ୍ଟି କିବା ପଲ୍ଲବତା ,
ଶ୍ରେଦ-ଶିଶିର-  ନୀରେ ସ୍ନାତ କିସେ
  ଲଜ୍ଜକା ଅପରାଜିତା ?
କସାଇଁକି ହସ୍ତେ  ନ ହରିଣ-ସଂହାରୀ-
  ବାଣ ଧଇଛି କେ ନାରୀ ,
ଚଳାପାଙ୍ଗ-ଛଟେ  ସୁତୀକ୍ଷ୍ଣ — କଟାକ୍ଷ
  ମନ ହରଙ୍ଗ—ସଂହାରୀ ,
ସୁରଭି ନିଃଶ୍ୱାସ —  ବାସେ ଲୁବ୍ଧବନ-
  ପ୍ରସୂନ ଗୁଞ୍ଜ ମଧୁପେ
ଯୂଥେ ଯୂଥେ ଉଡ଼ି  ପଡ଼ୁଥିଲେ ଆସି
  ସେରୂପ-ସୁନ୍ଦର-ରୂପେ ,
ଅପ୍ସରୀ-ନିନ୍ଦିତ  ଏ ସୁନ୍ଦରୀ ବୃନ୍ଦେ
  ଝଟକି—ଛାଟକି—ଶୋଭୀ

ଶୋଭା-ସ୍ୱର୍ଗପୁର— ଦଶ ପ୍ରାୟେ ଗୃହେ
ଉତ୍କଳ-ଗୃହ-କିଶୋରୀ ,
ନ ବସି ଥିଲେହେଁ କୋଟି କୋଟି ଭାଗ୍ୟ
ଜନ୍ମିଲ-ଶାରଦ-ନଭେ
ପୁନର୍ବସୁ ସଙ୍ଗେ ଅନ କେହୁ କେବେ
ସରକ ପ୍ରଭା ବଭବେ ?
ମଞ୍ଜୁ-ମଧୁ-କାଳେ କୋଟି କୋଟି ଫୁଲ
ଥିଲେହେଁ ଫୁଟି ଉଦ୍ୟାନେ ,
ଚୂତ-ମୁକୁଳକୁ ଯୁରୁଛୁ ମଧୁପ
ରସଇ କି କେବେ ଆନେ ?
ତେସନ ରସିଲା ଯଯାତିର ମନ
କିଶୋରୀ-ଶୋଭା-ସମ୍ଭରେ ;
ଶିକାରୀ ହୋଇ ସେ ପଡିଲା ଶିକାର-
ଫୁଲ ଧନୁ-ବାଗୁରରେ ।
ଦେଖାଙ୍କ ଭ୍ରମରେ ମଧ୍ୟେ ଗୃହବାଳା
ଦେବନ ସଖୀ ଦେବନ ପାଶେ,
ଛବ ମୂର୍ତ୍ତି ଏକ ରେଖାରେ ଦିଶଇ
ଇନ୍ଦୁଲା ଯଥା ଆକାଶେ, (୧)
ମୋହିନୀ କି ବବା ପଡଣ୍ଡ ମଣାଇ

(୧) ଇନ୍ଦୁଲା—ଅର୍ଦ୍ଧାନିଷକର ନିକଟବର୍ତ୍ତୀ ଶ୍ରେଣୀବିଶେଷ
ଶ ଟି ତାରା ।

ଅଣନ୍ତ୍ର ବେନ ଅପ୍‌ସରୀ ,
ଲକ୍ଷ୍ମୀ ବେନାପାଶେ   ସମ୍ମୂର୍ଛିତ କିବା
କ୍ଷୀରୋଦୁଁ କଳ୍ପ-ବଲ୍ଲରୀ ,
ଠିକେ ବଖାଣୁ ମୁଁ   କେମା-ରୂପ, କେମା-
ଭଙ୍ଗୁର-ଭାବ ପର୍‌ଏ ,
ଓହ୍ଲାଇ ଯାଉ ମୋ   ଭାରତୀ ଢାଣିରୁ-
କମଳୁଁ ପଦ୍ମର ଯାଏ ,
ସୁମୁଖୀ ଚନ୍ଦ୍ରମା-   ମୁଖ ଦେଖି ମୁଗ୍ଧ-
ମାନସ ଏସନ ପାଞ୍ଚେ—
ଚିଣ୍ଡକାନ୍ତ-ସାର   ଗୋଳି ଅବା ମାର
ଢାଳି ଅଛନ୍ତି ପ୍ରେମ-ଗ୍ରନ୍ଥେ ,
ହେମାଙ୍ଗୀର ମାଙ୍ଗ   ଭଙ୍ଗେ ମଥାମଣି
ବିକିରଇ ଦିବ୍ୟ ପ୍ରଭା ,
ମଳୟ-ବାସିନୀ   ଦକ୍ଷିଣା-ଲଲାଟେ
ଅଗସ୍ତ୍ୟ-ତାରା ସେ ଅବା ?
ମୁକ୍ତା-କେଶୀ କେଶ,   ଭାଳ ମଧ୍ୟେ ଗତ-
ଅଳକା କି ମନୋହାରୀ ?
ଉତ୍ତରିତ-ନିଶା-   ଦିବା ମଧ୍ୟେ ସନ୍ଧ୍ୟା
ସୀମାକି ଦିଶଇ ତାର ?
ବେନ କର୍ଣ୍ଣେ ସ୍ୱର୍ଣ୍ଣ-   ତାଡ଼ଙ୍କ କିବା ସେ

ରବି, ଶଶୀ ଏକାସ୍ଥଳେ ?
ନେତ୍ର-ନୀଳାବ୍ଜ     ଉଦିତ ମୁଦ୍ରିତ
ଭଜଇ ପଙ୍କଜ କୁଳେ ?
ଲଲିତାର ସ୍ମିତ-     ଲଲିତ—ଅଧର
ଉପମାକୁ କରେ ତୁଚ୍ଛ ,
ଯୌବନ-ପବନ—     କ୍ଷୁଭିତ କରି ସେ
ରୂପ—ସାଗରର ଜାତ ?
ଥୋପି ପଦ୍ମ ଅଙ୍କୁ     ଢ ରଙ୍ଗେ ରକ୍ତିମା
ସେ ରଙ୍ଗ ଓଷ୍ଠ ଅଧରେ
ଦନ୍ତପନ୍ତି ତହିଁ     ମୋତି ପନ୍ତି କି ସେ
ମାଣିକ୍ୟ-ପୁଟ ଭିତରେ ?
ହୃତାହୋଇ ଉଚ୍ଚ     ଘଞ୍ଚ ସ୍ତନ-ସ୍ବର୍ଗ
କାଞ୍ଚନ—କଞ୍ଚୁକେ ବନ୍ଧ ,
ବକଚ—କୁସୁମ     ଶୋଭାନ୍ତେ କି ପଦ୍ମ-
ପଞ୍ଜୂର—ପର୍ଣ୍ଣେ ପିନଦ୍ଧ ?
ସ୍ତନ ଜଘନର     ମଧ୍ୟେ କଟୀ କ୍ଷାମ—
ତୀର୍ଥ ପ୍ରାଏ ପ୍ରତିଭାତ ,
ତୀର୍ଥ-କାକ ପାସ୍ୟେ(୧)     ଲକ୍ଷି ନେତ୍ର ଯହିଁ

(୧) ତୀର୍ଥକାକ—ତୀର୍ଥକାକ ଉଭୟ ତୀରସ୍ଥିତ ବନ୍ଧ ବନ୍ଧନ ସେତୁରେ ନଦୀଗର୍ଭକୁ ବାହାର ପାରେ ନାହିଁ ସର୍ବଦା, ଦୁଇକୂଳ ମଧ୍ୟରେ ଗମନାଗମନ କରୁ ଥାଏ ।

କରୁଥାଇ ଅତ୍ୟାଚ ,
ଘନଜଘନାର ଘଣ୍ଟ ଜଘନ ତ
କାମ- ବଣିକର ଫନ୍ଦା ?
ଉରୁ-ଯୁଗେ କାଞ୍ଚୁ- ଦାମେ ମତ୍ତ୍‌କାମ-
କରୀନ୍ଦ୍ର ହୋଇଛି ବନ୍ଦା ?
ଆହା, ସେ ବାମୋରୁ ! କାମ-ବୈଜୟନ୍ତ-
ତୋରଣ—କନକ—ସ୍ତମ୍ଭ !
କଳ୍ପନା ପଶଇ ଯହିଁରେ ନ ସହ୍ର
କର ବର୍ଣ୍ଣନା—ବଲମ୍ବ ;
ଶାରଦ—ପ୍ରସ୍ଫୁଟିତ ଶିଶିର—ମୁକ୍ତିତ
ଧିକ୍କାର ସ୍ଥଳ କମଳ
ରକ୍ତିମା ଉଦ୍‌ଗାର ବଗ୍‌ଜଇ ଗନ୍ଧ—
ମଣ୍ଡିତ ପାଦ ଯୁଗଳ ,
କେଳି—ଭାଲତଳେ ବଙ୍କିମ—ଭ୍ରୂଲତା
ସରଳେ ଲୀଳା—ତାଣ୍ଡବ ,
ମନେ ଅପେ ପାଞ୍ଚ ଅସ୍ତ୍ର ଶାର୍ଙ୍ଗ-ଧନୁ
ତଳେ ଅବା ମନୋଭବ ,
ରକ୍ତକରେ ଦର ଫୁଲ୍ଲ ଅରବିନ୍ଦେ
ଯେଉଁ ଅଭ୍ରକରେ କ୍ରୀଡ଼ା
ସେ ଅଭ୍ର ସଘନେ ବ୍ରୀଡା-ବଶ-ଗଣ୍ଡେ

ବୋଲି ଦେଉଥିଲା ବ୍ରୀଡ଼ା,
ସୁନ୍ଦରୀଙ୍କ ବର୍ଣ୍ଣ    ଉଦ୍ୟାନ ଏ ଫୁଲ
କମାଣେ ଯୋଗି ଅହ୍ଲାଦେ
ଫୁଲଶର ପଞ୍ଚ    ଫୁଲଶର କ୍ଷିପି
ଏକଥିଁ ଶରେ ସନ୍ଧାଦେ ,
ଚଗୁଥିଲି ସଦା    କେମାର ଗହଣେ
ଅଲକ୍ଷିତେ ଫୁଲଶର
ନିର୍ଦ୍ଦୟେ ସେ ଶରେ    ବନ୍ଧି ଯଯାତିର
ହୃଦୟ କଲା ଜର୍ଜ୍ଜର ।
ସୁନେତ୍ରା ଏକାଳେ    ଯଯାତି ଆଡ଼କୁ
ଅଙ୍କାଛେ ଢାଳି ଚାହାଁଣି ,
ସଂହାର ନେଲା ଛା    କିଶ୍ଚଠାରେ ଖେଳା-
ଖଞ୍ଜନ ଲେଉଟା ଅଣି ,
ଚୁଲନା ଏହା ସେ    ସେହି ତାର ସିନା
ଦେଖିଲ ଯେ ଶୋଭା ସେ ବେଳେ
ହର ନେତ୍ରାନଳେ    ଦଗ୍ଧ ମଦନକୁ
ଜିଆଇ ଥାନ୍ତା ତା ହେଲେ ,
କାମ କାଣ୍ଡ ସଙ୍ଗେ    ସେ କଟାକ୍ଷ ଗଲା
ଯଯାତି ମରମେ ପଶି ,
ନବ-ପ୍ରେମ-ସ୍ରୋତ    ଉଚ୍ଛ୍ୱାସେ ପଡ଼ିଲା

ଯେଉଁପରି—ମୂଳ ଖସି,
ଚନ୍ଦ୍ରଲେମାଷ୍କିବ, ସଙ୍ଗଂ ବନ୍ଧନ
ଶ୍ୱେତ—ନୀର ଦରଦରେ,
ନାସିକା—ପୁଡାରୁ ବହନ୍ତ ଯତନେ
ଉଷ୍ଣ ଶ୍ୱାସ ପ୍ରଖରେ,
ସୁମ୍ପିଛେ ବହନ୍ତ ଯୁବାମଣି ବାଳା
ସେ କାଳ ଠାଣିକ ଧ୍ୟାର୍ମି,
ମନୋ ନଦୀ ଛାର ଉଚ୍ଛନ୍ନେ ସେ ଶୋଇ
ସିନ୍ଧୁରେ ମିଶିଲା ଯାଇ,
ଆଣ୍ଡୋଇ ଅସ୍ଥିର ଥୋଇ ଅବନୀରେ,
ଓଲୋଗି ବେଳେ ଅଳା
କୋରକତ କର କରକୁ ଅବନୀ—
ଲମ୍ବିଛ—ଲମ୍ବକୁନ୍ତଳା,
ଶୋଭର ତରଙ୍ଗେ ତରଙ୍ଗ ଉଠିଲା
ପୁଣି ସେ ସୁନଶୀ—କୁଳ,
ଅମଳ—କପୋଳେ ନୀଳକଣ୍ଠୀପୁର
ଏକାଲେ ଦୋଳି ମୃଦୁଳେ,
ସହସା ଚନ୍ଦ୍ରମା— ହାଟ ଭର୍ଜିଗଲା,
ଦେଖା ଦରଶନ ସାର
ଦେଉଳ୍ଣ ବାହାର, ଯେଥା ବାଢ ଉହୁଁ
[ କ ]

ଚଢିଲେ ଯେତେକ ନାରୀ ,
ହରଷେ ଗଲେ ସେ ଗହନ — ଉଦ୍ୟାନେ
ବନ୍ୟଲତା ଯଥା ଘନେ ,
ମନୋମୁଗ୍ଧକର ସ୍ୱପନ — ସମ୍ଭୂତ
ବିମ୍ବା ଯଥା ଜାଗରଣେ ,
ପଶ୍ଚିମାଚଳ — ପୃଷ୍ଠେ କୁଙ୍କୁମ — ବରଣା
ଶାରଦ — ସନ୍ଧ୍ୟାର ଲୀଳା
ଅନୁକରି ସେହୁ ଜନ ଶୂନ୍ୟ — ବନେ
ବିଲୀନ ହେଲେ ଛଇଳା,
ବିସ୍ମୟେ ସ୍ତମ୍ଭିତେ ଦେଖିଲେ ଯଯାତି
ପ୍ରସ୍ଥାନ ନୃପ ସ୍ୱଭାବ ,
ନବ ପ୍ରେମେ ଭୋଳ ହୋଇ ବଶ୍ୟ, ତାଙ୍କୁ
ଦିଶିଲା ଅନ ପ୍ରକାର ,
ଫୋଟିଗଲା ଯୁବା ନୟନ ଅଗ୍ରତେ
ନବପ୍ରେମ—କାବ୍ୟ ଗ୍ରନ୍ଥ,
ପ୍ରେମ — ଗୁରୁଠାରୁ ଶିଖିଲା ସେ ଅସ୍ତ—
—ବସ୍ତୁ ଭର ଅଦ୍ୟ ଅନ୍ତ ,
ଅନାବିଳ କରି ଦେଲା ନବ-ପ୍ରେମ
ବାସନା-ସ୍ରୋତର ଧାର ,
ଜମନା ନଦୀର କଲୁଷ—ଶୋଧନେ

ପ୍ରେମ ସେ ଅଗସ୍ତ୍ୟ ତାର (୧)
ପ୍ରେମ ଗଦଗଦେ କପୋତ—ଡାକନ୍ତ
ଶୁଣନ୍ତି ମନେ ଏମନ
"କୃଷ୍ଣ ସହିଥିଲ ତୋର ପିଡା, ଥିତ
ଧନ୍ୟ ହେଲ ଏ ଜୀବନ ;
ସହିଲଣୁ ଯେତେ ସ୍ମରିଣ ଦାରୁଣ—
ଅପ୍ରୋଷନ—ଯାତ-ଦୁଃଖ (୨)

---

(୧) ଅଗସ୍ତ୍ୟ ତାରା ଉଦୟରେ ନଦୀର କଲୁଷିତ ପ୍ରବାହ ନିର୍ମଳ ହେବାର କିମ୍ବଦନ୍ତୀ ଅଛି । ହୃଦ-ୟରେ ବିଶୁଦ୍ଧ ପ୍ରେମ ଉଦୟ ହେଲେ ଜୀବନ ପ୍ରବାହ ସେହିପରି ନିର୍ମଳ ହୁଅଇ । ଅଗସ୍ତ୍ୟ ଦକ୍ଷି-ଣାକାଶର ଗୋଟିଏ ଉଜ୍ଜ୍ୱଳ ତାରକା, ଶରତର ଆରମ୍ଭରୁ ଗ୍ରୀଷ୍ମର ଶେଷ ପର୍ଯ୍ୟନ୍ତ ଏହା ଦେଖାଯାଏ ।

(୨) ଅପ୍ରୋଷନ ଯାତ ଦୁଃଖ—କିମ୍ବଦନ୍ତୀ ଅଛି ଯେ ବାଲୁତରେ ପ୍ରହାର କଲେ ଯେଉଁ ହୀରା ଚୂର୍ଣ୍ଣ ହୁଏ ନାହିଁ ତାହା ପ୍ରକୃତ ହୀରା । ପ୍ରକୃତ ହୀରା ପ୍ରହା-ରରେ କଷ୍ଟ ସହ୍ୟକରି ଉଣ୍ଣାରୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପରଗଣିତହୁଏ ଏବଂ ସନ୍ତୁଷ୍ଟ ଭାବ ପ୍ରକାଶ୍ୟ ରୂପ ସୁନ୍ଦରୀ ମାନଙ୍କର କର୍ଣ୍ଣଭୂଷଣ ହୋଇ ତାହା ହୃଦ କପୋଳ ଚୁମ୍ବନରେ ସୁଖ ଅନୁଭବ କରେ ।

ଅଦଭଂଘ ଛୁଟେ     ଲଭଇ ସୁନ୍ଦର—
-କପୋଳ-ଚୁମ୍ବନ-ସୁଖ ,
ବକ୍ଷୁଫଳେ ବିନା     ଦେଖିଲ ପ୍ରଭାତେ
ଅସି ଏ ମର୍ତ୍ତ୍ୟ ଚନ୍ଦ୍ରମା
କଣ୍ଠ ସୀମନ୍ତିନୀ     ଶିରୋମଣି—ଗ୍ରୀମା,
କଣ୍ଠଶେ ଘ-ଉନୋତ୍ତମା,
ଧନ୍ୟ ଏ ଉତ୍କଳ-     ଭୂମି ଗର୍ଭେ ଥାଇ
ଥିଲ ଏ ଚନ୍ଦ୍ରମାଶୁହିଁ !
ଚକ୍ଷୁ ଲଭି ଚକ୍ଷୁ — ଫଳ ଏତେ କାଳେ
ଅରଜିଲ ସିନା ମୁହିଁ ;
ରଚିଥିଲେ ବର୍ଣ୍ଣ— ଶିଳ୍ପୀ ଏ ଶୋଭାଙ୍ଗୀ
କେତେ କଳ୍ପ ଏଥି ଲାଗି
ବିଶ୍ୱ— ଲୋଚନକୁ     ଚିତ୍ତ ବଦନକୁ
ପବିତ୍ର କରିବା ଲାଗି ?
ଅଜ୍ଞାନେ ଆସେ     ଅନେକ ବିଧି ସାଧି·
ପଦ୍ମେ ଚନ୍ଦ୍ରେ ହାରିବଳା ,
ଅଭ୍ୟାସେ ପାଠକ     ଅଛି, ପଞ୍ଚକୁ
ଗଢିଲେ ଏହି ଅବଳା ,
ଯେ ଯହିଁ ଶୋଭିବ     ଉପମାର ଦ୍ରବ୍ୟ
ଏକତ୍ର ଋଷିଲ ଲହି ,

ଏକଠାରେ ଶୋଭା ଦେଖିବାକୁ ଅବା
ଏରୂପ ବିହିଲେ ବିଧି ;
ସୁଷମାର ସୃଷ୍ଟି— ଉପବନ ପ୍ରାଏ
ଅଭସେ ଉଜ୍ଜଳ ଧଗ୍ ,
ସୃଷ୍ଟ—ସୁକୁମାରୀ ଏ କୁମାରୀ ଏଠି
ସାରସୃଷ୍ଟି ହେବ ପଗ୍ ?
ପୁଣ୍ୟଭୂମି ନୋହି ଥିଲେ କି ଏ ବାଳା
ଜନମି ଥାନ୍ତା ଉତ୍କଳେ
ବିଦଗ୍ଧ—ସୁନ୍ଦରୀ ସୌଦାମିନୀ କେବେ-
ସ୍ଫୁରେତ ବସୁଧା ତଳେ ?
ଅନାଘ୍ରାତ—ପୁଷ୍ପ ଅନଙ୍ଗୁଳି ଲୁନ-
—କିଶଳୟ ପ୍ରାଏ ତନୁ
ଥାନ୍ତି ଏ ବାଳାର ଫୁଲ ଧନୁ ଗୁଣ
ବନେ ଚମ୍ପା ଫୁଲ—ଧନୁ ?
ନହେ ସ୍ୱର୍ଗେ ଯେଣ ଦେବାକୁ , ଅନ୍ତରେ
ମଧ୍ୟେ ଆଣିବାକୁ ହିଁ କି
ଭୁବନ—ଲାବଣ୍ୟ——ଲକ୍ଷ୍ମୀ ଏହୁ ସିନା
ସୃଜନ ଏଭା ତଦ୍ଧିକ !
ମଗଧେ, ମୈଥିଳେ, ଅଙ୍ଗେ, ବଙ୍ଗେ ପୁଣି
ଦେଖିଛି କେତେ ସୁନ୍ଦରୀ ,

ଏ ଯୋଦ୍ଧା—ତରୁଣ   ସଖା ପଥରକୁ
ଟେବେଟି କି କେହୁସର୍ ?
ଆଜ ଲାଗି ସିନା   ମର୍ତ୍ତ୍ୟର ଉନ୍ନତି
ଏତେ ମହାତ୍ମା—ଯାଗ୍ !
ଅଜନାଙ୍କ ସିନା   ମର୍ତ୍ତ୍ୟର କୃଷ୍ଣ,
ଏତେ ଗଗନର ଛାଗ୍ ।
ମାଙ୍କ, ଆହ୍ୱା, କାହିଁ   ପଞ୍ଚାନନ ମୁହିଁ,
କାହିଁ ଉତ୍କଳେଶ ସୁତା ?
ନୋହିବା କଥାକୁ   ମନେ ପୋଷି, ମନ
ଥାଏ ଧରୁ ନାହିଁ କୃଥା ,
ଅନ୍ଧର ହେଉଛି   ମୋ କାହୁଡ଼ ନ ଜାଣି
ସୌଭାଗ୍ୟ-ଶୋଭା--ଅରଣ୍ୟ
ବାଳୁତ ହୃଦୟ,   କୁରୁକ୍ଷେତ୍ରେ ଯଥା
ଚକ୍ରବ୍ୟୂହେଁ ଅଭିମନ୍ୟୁ ,
ଧୃତରାଷ୍ଟ୍ର ଦେବେ,   ସ୍ୱତବାସ୍ୟ ହୃଦେ
ଯନ୍ତ୍ର ଏଥି କେଉଁ ଫଳ ?
ନ ଉତ୍ତାଏ ଦେହ   ସଂସାରେ, କ୍ଷାଏ,
ଅବସ୍ଥା ସିନା କେବଳ ,
ଭାଗ୍ୟଧର—ଭାଗ୍ୟ   ଅବାରେ ଫୁଟିବ
ଭାଗ୍ୟ ରୂପେ ଏ ଜୀବନା ,

ମୋହ ପକ୍ଷେ ନୂତେ   ଅପାର ଛାଗ୍ରେ
ଦୂଗ୍ଧାର ଉଲ୍କା ଶିଖା ;
ବାମନର ଚନ୍ଦ୍ର   ପରଶେ ମୋହର
ଦୁର୍ଲ୍ଲଭ ଏ ଗୃଜବାଲା ,
ଦ୍ୱିଷେପ୍ତେ ଗୁନ୍ଥିବି   ଦୁର୍ଗ୍ରାର ସୂତେ
ଅକାଶ--କୁସୁମ-ମାଳା ?
ବୃଥା ନ ବଳାଇ   ମନ୍ତ୍ର ଏ ବାଳା-
-ମଣ୍ଡଳ ଚନ୍ଦନ-ଲେପେ ,
ନୟନ—ରଞ୍ଜନ——ନବ——ଇନ୍ଦୁକଳା
ଦେଖନ୍ତୁ ଜନେ ଯେବାଳେ,
ଚେନ୍ହ ଭାବେ ମୁଣ୍ଡ   ହୃଦୁଁ ପ୍ରେମ ପୁଷ୍ପ
ପୂଜିବି ଏ ରୂପ—ରାଶି ,
ଦିନେ ଦେଖିଲେ ନୈକ ଶ୍ଳାଘ୍ୟ ଅଙ୍ଗ ଦାଳା-
-ଗ୍ରାସନ-ସେବାରେ ଆସି ,
ଦିନ ନେଲା ଯୁଦ୍ଧା——ସ୍ଥାଣି ଏକ୍ଷରୂପ
କଶୋଷି—ଶୋଭାବୃନ୍ଦ,
କଶୋଷର ସୁଧ   ଯଯ,ଉକ୍ତ ଦେହେ
ରଙ୍କୁ ଯଥା ସଂଗ୍ରାମ ,
ଛା ନେତ୍ରେ ନଳଜା   ପଶିଲ କ୍ଷବା ଟେ
ବିଶ୍ୱ ଶୋଭା-ବୃକ୍ଷୀଭୁଇ ,

ଯହିଁ ଦେଖିବାରେ    ନୟନେ ରୋଷ, ନଶିଯା
ବାଲାମଣି—ଅଙ୍କୁରୁଛି ,
ଯାହିଁ କାହିଁ ଯାଉ    ଅନ୍ତରେ ଭ୍ରମିଯା
ଠାବେ ଲିଭେ ନ ଭରଷ ,
ନବ ପ୍ରେମିକର    ଅବିଦ୍ୟା—ନାଶଶ୍ରୀ-
-ଶଭଲଢି—ବୈଶ୍ୱାନର , ( ୧ )
ଅନ୍ତରେ, ବାହାରେ, ଅଟେ, ପଡ଼ୁଛି ସେହ
ସୁନେତ୍ରା—ନେତ୍ର-ଉତ୍ଫୁଲ୍ଲ
ରୂପେ ଯୋଷି ମାର    ଚିହ୍ନିଥିଲା ଭାର
ଅନ୍ତରର ଅନ୍ତସ୍ତଳ ;
ଧୈର୍ଯ୍ୟ-ଆବରଣେ    ଘୋଡାଇ ପ୍ରେମକୁ
ପୋଷିଲା ସେ ଅନୁରାଗିଛ ,
ଫଲ୍‌ଗୁ-ଅନ୍ତଃସ୍ରୋତା    ଜୀବ-ସ୍ରୋତ ଯଥା
ଘୋଡାଇ ରଖେ ସୈକତେ ।

---

ବିଶାଖା ସଖୀ ।

ଗୋବିନ୍ଦ ଉନ୍ମତ୍ତା    ଗହନେ ଗହନ-
-ବନେ ବୈତରଣୀ-ତୀରେ,

---

( ୧ ) ସଂକଳ୍ପ ନାସ୍ତିକ୍ୟର ଲୟ ଯେ ପୁନଃପୁନଃ ଚାଟ କରୁଥାଏ ।

ମତ୍ତେଭେ ମତ୍ତ——ମାତଙ୍ଗ—ଗମନା
ନାନା ରଙ୍ଗେ ପାରିଧ୍ୱର,
ନଦେ ତାଙ୍କ ପ୍ରାପ୍ତ ବାମାଦଳ ଗଲେ
କଳ୍ପଣେ ହୋଇ କାନନେ,
ସଂହାରିଲେ ବନ୍ଧି ନାନା ପଶୁ ପକ୍ଷୀ
ଅମୋଘ ଘାତ ମାଗିଣେ ,
ଚଞ୍ଚଳଚଷାଙ୍ଗୀ ମୃଗାକ୍ଷିଏ ଦେଖି
ମୃଗେନ୍ଦ୍ର—ମୁଖା ଉପରେ
ଝପଟାଇ ଦେଲା ଘରେ ଭୁଜଙ୍ଗମ
ସେ ଘୋର କାନ୍ତାର ପଥେ,
ମୃଗୀ ପଛେ ପଛେ ୯ ଏକାକିନୀ ଧାଇଁ
ଭେଟିଲା ରମ୍ୟ ସରସୀ ,
ନୀଳେନ୍ଦ୍ରୀ ତୀରନେ ଶୋଭିତେ ବେଷ୍ଟିତ
ମେଘମାଳେ ଯେହ୍ନେ ଶଶୀ,
ସ୍ୱଚ୍ଛ ମୁଗ୍ଧଭୀର ଦୂରୁ ଅଗ୍ରସର
ନଭ ପ୍ରାନ୍ତେ ନୀଳିମାରେ ,
ଝଙ୍କାରିତ ଉର୍ଦ୍ଧ୍ୱେ ଅଙ୍କାଶେ ଉଡ୍ଡୀନ
ସରସ—କୁଳ ଝଙ୍କାରେ ,
ନୀର ଦେଖି ପ୍ରତେ ଅପେ କ୍ଷୁ ପୁଞ୍ଜିତ
ଶିଞ୍ଜବନ—ପୁଣ୍ୟ ଗୃହି ,

ସ୍ୱ, ଦଉବ ଅବା   ଜିନ୍ଦୁରେ ଖେ'ଉଛୁ
ଶରତର ପୌର୍ଣ୍ଣମାସୀ ?
ଖଞ୍ଜଦତ୍ତ ଦ୍ରୁମ   ଉଦ୍ଧୁଛି ଗୁଞ୍ଜେ
ଦ୍ରୁଥଇ କମ୍ରା ପ୍ରଭାତ ,
ପୂର୍ଣ୍ଣ ଥାଇ ସୁଧା   ଶୃଙ୍ଗ ପ୍ରାନ୍ତେ ହୃଦେ
ମଦଭର ଯଥା ବାତ ,
ନୀର—ବସନର   ଅତି ପ୍ରାନ୍ତେ ଫୁଟି-
-ଉଛି ରମ୍ୟ କମଳ ,
ତୀରଭୂମି ସଦା   ଧଉତ , ଯହିଁରେ
ଲୋଚନ ହୁଏ ଶୀତଳ ,
ତୀରପ୍ରାନ୍ତେ ସେହ   କମଳନୀ—ଷଣ୍ଡେ
ଉଠିଛି ଅନନ୍ତ ଗନ୍ଧ
ନୀଳ-କଳ—ଶ୍ୱେତ କହ୍ଲାର—ଲଗ୍ନ ଭ
ବିହଗ—ଘଣ୍ଟ—ସନ୍ଦ ,
ବୈତରଣୀ—ତୀର—ଷଡ଼ାସିନ୍ଧୁ—ବନ-
-ଦେବତା-ସୌଧ ପ୍ରକାଣ୍ଡ
ପଦାର୍ଶିତ ବନ——   ଲତା ପାଦପ-
-ଶିହଳ—ମସୃଣ—କାଣ୍ଡ
ତାବେ ତାବେ ଉଚ୍ଚ   ନିବିଡ଼ପଲ୍ଲବ-ଭୂମି
କାନ୍ତ—ଶାଖା ପାଦପ ,

ନୃତ୍ୟେ ଗୌରବେ ଚଣ୍ଡ— ଚଣ୍ଡାଂଶୁ କିରଣ
ସମ୍ପର୍କେ ଚନ୍ଦ୍ରାତପ ,
ସେ ନାରଙ୍ଗ-ପର୍ଣ୍ଣ- ଗନ୍ଧର ଗ୍ରନ୍ଥାରେ
ପଡ଼ିଲା ଯା ଏବେ ଶୁଣ ,
ସର୍ବାଙ୍ଗକ୍ରୀନତା ଭୂଲଭବ୍ୟଭାର
ଅପାଧ ଭ୍ଲ ପନ୍ତୁ ପୂଏ ?
କୌତୁହଳ, ଅହା, ମର୍ତ୍ତ୍ୟେ ଯେ ପ୍ରାଣିଙ୍କ
ଲୋଲେ ମନ୍ଦ ହୃଦ୍‌ନିଷ୍ଠା
ଖେଳାଇ ଯୌବନ— ଜଳଧିରେ ପୂର୍ଣ୍ଣ-
—ଚନ୍ଦ୍ରରଶ୍ମିଜ୍ୟୋସ୍ନ ତରଙ୍ଗା !
ସତକ୍ଷଣେ ଏକ ଉଲୁପ୍ରେମ ଭଙ୍ଗି
ଦେଖିଲ ଗୃହ—ଭୂମାଗ୍ରେ
କନ୍ଦର୍ପ—ସୁନ୍ଦର— ମୁଦା ଶୋଭ ଅଛି
ମୃଗତୃଷ୍ଣାର ବେଶ ଧରି ,
ସ୍ୱଭାବେ ପୁରୁଷ ନୁହେଁ ସେ ମାନବ
ପୁରୁଷ—ରୂପୀ ଅବଳା ,
ଅଙ୍ଗ ଦେହୁ ଦୁହେଁ ମଗଧ ନରେନ୍ଦ୍ର-
-ନନ୍ଦନା ସେହୁ ବିମଳା ,
ଚନ୍ଦ୍ର-ଗୌର-ବପୁ— ଅଙ୍ଗ ପୁଞ୍ଜ ବାରି—
ବାଣୀ—ସୁନା ଦପି ହରେ ,

ହେମାଙ୍ଗ ମୈନାକ ଲୁଚି ରହିଛନ୍ତି
ଯାସେ ଏ ଜଳ-ସାଗରେ ?
ଏକା ମୁଗ୍ଧ ଜନୁ ଜୀବ — ପରିଚ୍ଛଦେ
ଅତୁଳ କମଳା ଛନ୍ତି ,
ତୃଣ — କଟି — କଟେ ଲଗ୍ନ ଅଞ୍ଚଳ ତା
ପାଶେ ଥୁଏ ଷଡ଼ଥନ୍ତି ,
ବରଷୀକ ମୃଦୁ — ବାତେ ମନ୍ଦେ ଦୋଳେ
ସ୍ନେହାର୍ଦ୍ର -ଘନେ ଜୀବନ-
କୁନ୍ତଳର ଲଗ୍ନ ଗୁଚ୍ଛ ଉଥଇଛି
ଅଯତ୍ନ—ସ୍ନାତ ମାଧୁରୀ ,
ସେ ରୂପ ଦର୍ଶନେ ଚକ୍ଷୁ କୁମାରୀର,
ଉତ୍ତୁଙ୍ଗ କୁମାରୀ — ବପୁ
ସ୍ନେହେ ଅର୍ଦ୍ର ହୋଇ ପଦ୍ମକର-ତଳ
ଶରୀର ଭଙ୍ଗୀ ସ୍ତମ୍ଭ ,
ମୃଗାଙ୍କର — ଛବି — ପୁନରୁ — ପଟଳେ
ଝାଙ୍କୁରିଲ ଗଣ୍ଡସ୍ଥଳ ,
ନବଲୋକୋଚ୍ଛ୍ୱାସେ ଧମନେ ଝୁଲନ୍ତ
ଉଦ୍ଧୋର—ରୁଦ୍ଧ ସ୍ପନ୍ଦନ ,
ଭୁଜକୁ ଉଠାଇ ମନେ ମନେ ବାଳୀ
ଚଳନ ଦେଉଥ ଥାଇ

"ଅହା ଏ ସୁନ୍ଦର——ବର ତ ମନ୍ଥର
ନର ପ୍ରାଣେ ଦଗ୍ଧ ନାହିଁ ,
ପ୍ରେମ—ସିଂହାସନେ ଏହାପର୍ କ୍ଷଣେ
ବସିବା ପାଇଁ ସୁଜନ

ମର୍ତ୍ତ୍ୟ ମଣ୍ଡଳେ ତ ଅଦ୍ୟଯାଏଁ ଦେଖି-
-ନଥିଲା ମୋର ନୟନ ,
ମର୍ତ୍ତ୍ୟ ଉପାଦାନେ କେବେ କି ସମ୍ଭବେ
ଏ ଅପୂର୍ବ ରୂପ ଠାଣି ?

ଦେବ ହୋଇଥିଲେ , ଆନ କିଏ ହେବ
କିମ୍ବା ପୁଷ୍ପ—ଧନୁ-ପାଣି ?
ହରରୂପ—ଯାର ଅବା ଏ କୁମାର
ଦେବ ପଦ୍ ଅର୍ପେ ପ୍ରଭେ ,
ବନଦେବୀଙ୍କର ଅତିଥି ହୋଇ କି
ଭ୍ରମେ ଏ କାନ୍ତାର ପଥେ ?
ନର ହେଲେ, ଧନ୍ୟ ସେ ଭୂମି, ଯେ ଭୂମି
ଏ ଯୁବା ଜନମେ ପୂତ ,
ଧନ୍ୟ ସେ ଦମ୍ପତି ଏ ନନ୍ଦନେ ଯା'ର
ଅଙ୍କ ହେଲା ଅଳଂକୃତ ।

ହୋଇନ ଥିବନ୍ତି  କେତେ ଲାବଣ୍ୟବତୀ
ଜନନୀ ଯୁବାମଣିର
ଏ ଜଗତର ବଧୂ  ବଢାଇଲ ଯେତେ
ନିଜ ସ୍ତନ୍ନୁ ଦେଇ କ୍ଷୀର ।
ତହୁଁ ଶତଗୁଣେ  ଲାବଣ୍ୟବତୀ ପୁଣି
ଭବେ ସେ ମତ୍ତକାଶିନୀ
ଜପଫଳେ ଯେତୁ  ହୋଇଛନ୍ତି ଏହିଷ୍ମ-
ମୋହନ ମନ ମୋହିନୀ ,
କେଉଁ ବାଳା ଦେଖି  ନୋହିବ ଯୁବାର
ନଂଙ୍କେଲ୍ପ ପ୍ରଣୟ—ସଖୀ ?
ନାରୀ କି ଗଢିଲ  ଏମୂର୍ତ୍ତିକି ଜାଣି
ଯୁବତୀ—ଧୃତି—ଧାରିଣୀ ?
ଚନ୍ଦ୍ରାନନ ଦେଖି  ଅମରୀଏ ମୂର୍ଚ୍ଛା
ଲଭିବେ ହୋଇ ସତ୍ୱର ,
ସ୍ୱର୍ଗେ ଲଭିବେ  ରରୁ ଦମ୍ଭାଅଭ
ରୂପ ଖଣି—ପଦ୍ମଗନ୍ଧ ;
ରୂପାକାଶେ ଏହୁ  ପୂର୍ଣ୍ଣଚନ୍ଦ୍ର , ରୂପ-
ସରେଏ ପଦ୍ମକ୍ଷିଣ୍ଣ
ଅରେ ଦେଖିଲ ଯେ,  ଗ୍ରହପୂଣି ଏହା!
କେବେଳେ ତା ହୁଥିବ ?

ମର୍ତ୍ତ୍ୟଜାୟା-ରୂପଂ     ଶତେକ ପ୍ରଶଂସିବେ
ରମ୍ଭା, ଉର୍ବ୍ବଶୀ , ମେନା
ଥରେମାତ୍ର ନେତ୍ରେ     ଆସ୍ୱାଦ ଏ ରୂପ
ଯୁବତି—ଯତ୍ନେ ସେବା ,
ଏତେ ଦିନ ଯାଏ     ଥିଲା ମୋ ହୃଦୟ
ବଜ୍ରସ୍ତର ମୋର ଚେତା ।
ଢଏ ଜାଣି ଥିଲି     ଖଣେ ଜୋଡ଼ା ଠପି ?
ଏନ୍ତୁରୂପେ ପ୍ରଭୁଦ୍ରୋହ !
ଗନ୍ତୁଁଲେତ ପୁଣି     ନୋହିବ ? ମୂର୍ଚ୍ଛିତ
ନମ୍ରନେତ୍ର ଏତେ ସତ !
ହବଦେବେ ଯାବେ ଓ     ଏକ କଥାସ୍ତର
ମ୍ଲେଚ୍ଛ୍ୟ ହାମ୍ଭ କୁଳେ-ଶଙ୍ଖୀ ।
କୁମାର ଏ ଯେତେ,     ଜଗତ ଏହାକୁ
ପ୍ରେମତତ୍ତ୍ୱ ଜାଣିଥାଉ
କୁମାର ନୋହିଲେ     ଲେଖା ଅଛି ମୋର
ଲଲାଟେ ଚିର କୌମାର ,
ନୋହେ ମୋର ଯେବେ ,     ଚଞ୍ଚଳ ଚିଅଉ
ପ୍ରାରବ୍ଧ—ସଙ୍ଗେ ବିରୋଧ ?
ଲେଖିବ ନାହିଁତ     ପ୍ରାରବ୍ଧ ପାହାର
ସନ୍ଧିଲ୍ଲ—ପଙ୍କ ବନ୍ଦୋଧ ?

ଏକ୍ଷିରୂପେ ଯାଇ   ସେ ଦ୍ରୌପଦୀଙ୍କ ସଦ-
ସେଭଳି ହରିଣୀ — ଦୃଶା
ସେତେବେ ସେଉ ଲମେ   ନଶାବଶେ ଭାର
ଶୋଭନ ବଢିଲ ତୃଷାଃ ,
ଲଗି ରହିଲା ରା   କମଳ — ନୟନ
କମଳା — ରୂପ — ଶୋଭାରେ ,
କମଳାର ଶତ୍ରୁ   ଲୁଚିଲ ତେମାର
ଘୋଙ୍କ — ଘୋଶା — ଫୁଲ୍ଲାରେ ,
ତକ୍ଷଣେ ଦେଖିଲ   କେନ୍ଦ୍ରପେଞ୍ଚବାଲା
ଅଗ୍ରଚେ ଶଙ୍ଖା — ଗଜଗ୍ରୀ
ଲକ୍ଷ ଚନ୍ଦ୍ରାପିତ   କୈଶ୍ରେଏ — ଉଜ୍ଜଳ —
ଧରଣୀ — ତମ୍ବା — ତହିଁଷ ,
ଏକାଠି ଦେଖାରୁ   ଗୃହନେଶ ତେମା ।
ନୃପାରେ ପୋଉଛ ମଥା ,
ମନ୍ଦଲଇ ମୃତ   ପ୍ରାଏ ପର ପ୍ରକ୍ଷି
ଯଥା ନିଜ — କୁଳ — ଲଭା ,
ଅଯତନ-ମୁଖ-   ଗୃହେଗରଞ୍ଜି ଦେଲ୍
ଚେମ୍ବପା ହର୍ଷ କପୋଳ ,
ଲଲଚ- ଲୁମାଗ୍ର-   ଚଭ୍ରମାଢେ ରହିଁ
ରଙ୍ଗେ ରଚନ୍ଦ୍ରେଦୋଃର ?

ସ୍ୱପନ ରୁ ପାଇଲ    ଏକା ଯୋଗ୍ୟ ପୁତ୍ର
ପିନାକୀରୂପ—ସୁନା ପ୍ରଭ ,
ଅଙ୍ଗସେ ଲଳିତା    ସେପାଟେ କେହ୍ନ ବା
ଭୃଗଳକ୍ଷ୍ମୀ ପୁଷ୍ପବତୀ !
ଝରନ୍ତୁ ଝରିସେ    ଦେଲ ପରିତୃପ୍ତ
ପୁଷ୍ପଗଛରୁ ବୃନ୍ଦମୁହିଁ ,
କଅଳ-କାଙ୍କ୍ଷୀ    ଗୋରା ବସନ୍ତରୁ
ବନେ ଯଥା ଫୁଲଚୁଇଁ [୧]
ନବବଧୂ ସେ ଯା,    ନୀରବ ଭାଷାରେ
କହିଦେଲ ସେ ସକଳ
ପ୍ରେମ-ଅର୍ଦ୍ଧ ଭାର୍ଗି    ଦରମୁକୁଳିତ-
ଲାଜନେଳ ଚନ୍ଦ୍ରୋପଳ ,
କେମା ମୁଖଭଙ୍ଗୀ,    ରହିଁଣି, ସ୍ୱଷାରୁ
ଅନୁରାଗ ଲକ୍ଷି ଭାର
ଦରହାସ-ଛଟା    ଭାସିଲା ଗୃନ୍ଥ—
ଅସ୍ୟ—ବମେ କମଳାର ,

---

(୧) ପକ୍ଷୀବିଶେଷ । ବସନ୍ତ ପ୍ରାରମ୍ଭରେ ପ୍ରତିବୃକ୍ଷମାନଙ୍କରେ ବସି "ଚୁଇଁ ଚୁଇଁ" ଶବ୍ଦକରେ । ଗ୍ରାମମାନଙ୍କର ପୁଷ୍କରିଣି ସଜନା ଗଛରେ ଏହା ପ୍ରାୟ ଦେଖାଯାଏ ।

ଝଲସିଣ ଥିଲ   ଦୀପ—ଜ୍ୟୋତି ଯଥା
ସମୁଦ୍ର—ମନ୍ଥନ—ବେଳେ,
ମୋହନ—ମୋହିନୀ — ରୂପୀ ହରମୁଖେ
ହିପୁତ୍ରିରଙ୍କର ମେଳେ ,
ଲକ୍ଷେ ଲଲନାର   ଲଳିତ ମଧୁର
ହାବ ଭାବ ,  ବଙ୍କାଗ୍ରଦ ,
ଜାଣିଲ ତାଠାରେ   ହୋଇଛି ଦୁରନ୍ତ
କୁସୁମ — କାଣ୍ଡ ବିବାଧୀ ,
ବୋଇଲ କମଳା   "ଶୁଣ ହେମାମଣି,
ଏ ନୁହେ ଲକ୍ଷ୍ମାର ସ୍ଥଳ ,
ମଳମ୍ଭା — ଅମ୍ବରେ   କି ହେଲାଏ ତୁମ୍ଭର
ସୁବର୍ଣ୍ଣ ଭ୍ରମ କେବଳ ,
ଯେମନେ ମଣିଲ,   ନାହିଁ ମୁଁ ତାହା
ଅବଳା ତୁମ୍ଭର ପରି ,
ଦେଶ ଦେଶାନ୍ତରେ   ଏକାକିନୀ ଭ୍ରମେ
ଭୈରବୀ—ବ୍ରତ ଆଚରି ,
ପିତୃ ମାତୃ—ସୁଖୁଁ   ଶୈଶବୁଁ ବଞ୍ଚିତ,
ସଂସାର—ମାୟା ଛୁଟିଛି
ନକାଅଁନେ ରହ   ଏନ ଗମଇ ମୁଁ
ଯହିଁ ଯେବେ ଅଭିରୁଚି ,

ମୁଗ୍ଧ- ମୃଗାଙ୍ଗନା- ସେବିତ ସୁରମ୍ୟ-
କୋମଳ ଶ୍ୟାମଳ ତୃଣ
ବୈତରଣୀ-ବୀଚି -ଶୀକର ଶୀତଳ
ଶ୍ରୀବିରଜା ପୀଠା ଝିଣ
ନୀଳାଚଳ -ପଥେ ଦେଖି ଉତ୍ଫୁଲ୍ଲନେତ୍ର
ହୃଦୟେ ଅପାର ପ୍ରୀତି ,
ସେହୁକାଳୁ ଏଥି ପାନ୍ଥଶାଳା ରଚି
କରୁଅଛୁ ଅବସ୍ଥିତ ,
ଶୈଶବେ ମୃଗୟା ଅସ୍ତ୍ର ଚାଳନାରେ
ଦକ୍ଷହୋଇ ଜନ୍ମ ଦେଶେ ,
ପ୍ରବାସେ ଭ୍ରମଇଁ ଅନୁକ୍ଷଣ ଏଠି
ବୀରପୁରୁଷର ବେଶେ ,
ବନ୍ଧୁବିହୀନ ଜନ — ସ୍ମୃତି କାତର ଯା:
ତା ପ୍ରାଏ ହୁଏ ଅଳୀକ ,
ମାତ୍ର ଭୂମିକଥା ଶୁଣିଥିଲି ଯେତେ
ଦେଖିଲି ତହୁଁ ଅଧିକ ,
କ୍ଷୋଭମୟି ! ତୁମ୍ଭେ ବୃଥେ ଗୁଣେ ଏହୁ
ଉତ୍କଳ ମହୀ—ଗୌରବ,
ଉତ୍କଳ-ସରସେ ଶତଦଳ , ଅବା
ସେ ଶତଦଳେ ସୌରଭ ,

ଦ୍ରୁଷ୍ଟବ୍ୟର ସୀମା　　ଏତେହଦନେ ଦେଖି
ଜୀବନ ମଣିଲି ଶ୍ଳାଘ୍ୟ,
ତୁମ୍ଭ ସଙ୍ଗେ ମୋର　　ଏ ମିଳନ ଅଜ
ଘଟାଇଲା ସିନା ଭାଗ୍ୟ ।"
କମଳାର ବାଣୀ　　ଶୁଣି ଗୃହବାଳା
ଅଙ୍କେ ବସି ପାଶେ ଯାଇ
ଭକ୍ତିଭରେ ନତ　　କଲା ତା ପଦ୍ମରେ
ମହୀରେ ଶିର ଲଗାଇ,
ମାଙ୍କ ପୂର୍ବ ସ୍ପର୍ଶ　—　ତୁମ ତୁନ୍ଦିବାକୁ
ମର୍ମେ ବାଲ୍ଲି ଦେଲ ବନ୍ଧ,
ବନ୍ଧ ସ୍ମରଣର　　ଅଛି ଲି ବାହାର,
ମାକ ଫୁଲା ଗଲା ରନ୍ଧ,
ତୁମ ଅଙ୍କେ ସିନା　　ନାମାନ୍ତର ତାର
ବେଣେ ଯା ସୁଖ ବୋଲଏ ?
ତତ୍ତ୍ୱାଲୋକେ ବନ୍ଧ　　ଶୂନ୍ୟ ଦେଖିବାକୁ
କଏ କେବେ ସୁଖ ପାଏ ?
ଶ୍ରାନ୍ତ ଜାଣି ବ୍ରହ୍ମ　—　ସୁତାକୁ କମଳା
ସରସେ ପଣି ତକ୍ଷଣ
ତୋଳି ଥିଲେ ଫୁଲ　—　ପଦ୍ମ, ପଦ୍ମଦଳେ
ଭରତ ପୁଷ୍ପ — ଶୟନ

ନଭୋଦୋଳାପରେ , ତହୁଁ ଲଳିତାଙ୍କୁ
ବସାଇଲେ ପ୍ରେମାଦରେ
ପାର୍ଶ୍ୱେ ବସି ତାର ସୁମନ୍ଦେ କମ୍ପିଲ
ତଳାବ୍ଧି ପଦ୍ମ ପତ୍ରରେ ,
ସ୍ତୋକ-ପତ୍ରବର୍ତ୍ତେ ବେନ ହୋଇଗଲେ
ବେନଙ୍କର ପ୍ରେମଦାସୀ ,
ଜ୍ୱଲିପିଲେ କେତେ ରଙ୍ଗେ ବେଷ୍ଟକଳା-
-କଲ୍ଲୋଳିନୀ କଳଭାଷୀ ,
ଯଯାତିରକଥା ପ୍ରସଙ୍ଗ ବିମଳା
ନବଳ୍ପ ତହୁଁ ପ୍ରକାଶ ,
ଆନ କଥା ଘେନ ^ ନାନାମତେ ବେଷ୍ଟ
କଲେ ହାସ ପରିହାସ ,
କରପଦ୍ମେ ତହୁଁ ଲଳିତା ସୁନ୍ଦରୀ
ଧରି ବିମଳାର କର
ଅଳକଳା ତାକୁ ଘେନିଯିବା ପାଇଁ
ଗବାକ୍ଷେ ଚିତ୍ର—ନବର ,
ଜେମା ଅନୁସରି ଆଳଏ ଏକାନ୍ତେ
ତହୁଁ ହେଲେ ଉପସ୍ଥିତ ,
ପୁରୁଷ—ସଙ୍ଗିନୀ ଲଳିତାକୁ ମଣି
ସରବେ ହେଲେ ବିସ୍ମିତ ,

କାନ୍ତା କାନ୍ତ ପ୍ରାଏ    ଯୁଗଳ ବେଶରେ
ବେନଙ୍କି ଦେଖି ନୟନେ
ବିଷମ—ସମସ୍ୟା    ଫେଡିବାକୁ କେତେ
ପାଞ୍ଚୁ ସେ ପାଞ୍ଚୁଲେ ମନେ ,
କୁମାର ସ୍ୱପ୍ନିତ — ସଙ୍କେତେ ସେ ଭ୍ରମ
ତୁଟିଗଲା ତାହାଙ୍କର ,
କମଳା—ପୟୃରେ    ସର୍ବେ ଯାଉ ଛନ୍ତିଁ
ଓଳଗି ହେଲେ ସତ୍ୱର ,
ବେନ ସୁନ୍ଦରୀର    ଅଗେ ସେ ସଖିଏ
ବନ୍ଦନା କାହ୍ଳ ଲଗାଉଲେ
ଉଷା କାବ୍ୟତାର୍   ଅଗେ , ଯଥା ଅହ୍ବା ,
ପଦ୍ମାକର ମନ୍ଦାନନ୍ଦେ !
ବେଢିଣ ବସିଲେ    ବେନଙ୍କି ସେମନ୍ତ-
—ଭୂଷଣା ବାମା ସକଳ
ତାରା ଚନ୍ଦ୍ରମାକୁ    ଯଥା ଚକ୍ର ବର୍ତ୍ତୁ-
—ଛିକ୍କୁଲ—ବିଧୁମଣ୍ଡଳ ;
ରଙ୍ଗ ରସେ ରହି    ସନ୍ଧ୍ୟାଯାଏ ଗୃହ
—ନନ୍ଦନୀ ସେ ଅଟବୀରେ
କମଳାକୁ ସଙ୍ଗେ    ଘେନ ସଖୀଦଳେ
କାହୁଡଲେ ସ୍ୱ ଶିବିରେ ,

ଜେମା ଅନୁରୋଧେ ଶିବରେ କମଳା
ପୁରୁଷର ବେଶ ଧରି
ଇନ୍ଦୀବରେକ୍ଷଣା ପିନ୍ଧିଲା କନକ—
—ଖୁଣ୍ଟୁମିତ ଝିନ ସାଡ଼ି,
କମଳାର ବାସ ଲାଗି ଦିବ୍ୟ ତମ୍ବୁ
ତୋଳାଇ ଦେଲେ ବକ୍ସିଜୀ,
ସେ ତମ୍ବୁରେ ସୁଖେ ଯାପିଲା ରଜନୀ
ପୂର୍ଣ୍ଣ ରଜନୀଶ ମୁଖୀ ,
କମଳାର ମୁଦ୍ରା — ଭଙ୍ଗକାଳେ ନିଦ୍ରା
ପର ହିତ ଚିନ୍ତା ସୁତା
ଫୁଟିଗି ବଜେ ଦେଲା କମଳା ସଙ୍କେତେ
ରକ୍ଷିଦଳେ ଚୋଇ ବୃତା ।

---

ତୃତୀୟ ସର୍ଗ ।

ମାର୍ଗେ ଯାଉଁ ଯାଉଁ କେଡ଼େ ସୁନ୍ଦର
ଧୀରତ କ୍ରମେ କମଳ ,
କ୍ଷୀର ନୀର , କମ୍ପା ସିନ୍ଧୁ ସମ୍ଭୂର
ସୀତଳ ଗନ୍ଧ ସେ ବଳ ;
ଐଶ୍ୱର୍ଯ୍ୟ, ରୂପ, ରୁଚି ଯୌବନ ଦେହ
ଦେଖି କମ୍ବୁକଣ୍ଠ—କଣ୍ଠୀ.

ଦୂରେ ଦୂରେ ପଡ଼ି — ଗଲ ପାରିହର
ପୁଷ୍ପବଲ୍ଲୀମୟୀ ଗଣ୍ଡୀ ,
ବନପଥେ ଖର — ସ୍ରୋତା ବ୍ରାହ୍ମୀ ପାର
ହୋଇ ସେ ଗନ୍ଧନ ଦଳ
ମିଳିଲି ବରୁଣା — ତୀରେ ଉତ୍ତୁଙ୍ଗହିଁ
ପୁଣ୍ୟ—ଉଦୟାଚଳ , (୧)
ଗୁମ୍ଫାକୀର୍ଣ୍ଣ ଯାର ଅସଂଖ୍ୟ ଗୁମ୍ଫାରୁ
ବୋଧିସତ୍ୱଙ୍କର ଲିଳା —
ମୂର୍ତ୍ତିଏ ଦେଖନ୍ତି ଯୁଗେ ଯୁଗେ ଏଥି
ମର୍ତ୍ତ୍ୟର ଭକ୍ତଙ୍କ ଲୀଳା ,
ଶୈଳ ତଟେ ଅମ୍ବ—ତୋଟାରେ ପଥିକେ
ମଧ୍ୟାହ୍ନ ନୀଦ ବଢ଼ାଇ
ଅସ୍ତାଚଳେ ରବି — ସଙ୍ଗେ ଉପାଲେଖ-
-ହ୍ୱର୍ଗେ ପ୍ରବେଶିଲେ ଯାଇ,
କେବ ବର୍ତ୍ତିବ ସେହୁ ନବରତ୍ନ ଶୋଭା ?
ଥିଲ ତା ଶୋଭା ପରସ୍ବ ,

---

(୧) ଐତିହାସିକ ଉଦୟଗିରି ବରୁଣା କୂଳରେ ଅବସ୍ଥିତ । ଏ ପର୍ବତରେ ଯେତେ ବୌଦ୍ଧମୂର୍ତ୍ତି ଦେଖାଯାଏ ଉତ୍କଳରେ ଅନ୍ୟ କୌଣସି ପର୍ବତରେ ତାହା ନାହିଁ । ଲଳିତଗିରି ଏହାର ଅଦୂରବର୍ତ୍ତୀ ।

ଜପମାଳା—ରୂପେ     ପିନ୍ଧିଥିଲା ଯାକୁ
ଶୋଭନ୍ତୀ ଉତ୍କଳ ଥର୍ ,
ବାତେ ଛିନ୍ନଭିନ୍ନ     ସନ୍ଧ୍ୟାକାଶେ ସ୍ୱର୍ଣ୍ଣ-
--ବର୍ଣ୍ଣ—ଅଭ୍ରଖଣ୍ଡାକାର
ତରୁଗୁଲ୍ମାକୀର୍ଣ୍ଣ ( ୧ ) ଜୀର୍ଣ୍ଣ—ସୌଧଶୃଙ୍ଗ
ଅଦ୍ୟାପି ଝଲସେ ଯାର ,
ଘୋଷାଇଛି, ଅହା,   କାଳ ଖ୍ୟାତି ଯାର
ଧ୍ୱସ୍ତୂପର ଆବରଣେ , ( ୨ )
ଶତ୍‌କୀର୍ତ୍ତି ଧାର     ଦେଉଳ—ପନ୍ତ୍ତି
ଶୈବାଳଣ୍ଡରେ ଯେସନେ ,
ଭୁବଂଶ୍ଚେ ତଟ     ପ୍ରାଏ ଗୃରୁ ଛବି
ସ୍ଫୁରୁଥିଲା ସେ ପୁରୀର

---

( ୧ ) ପ୍ରାଚୀନ ପ୍ରସ୍ତରଗଠିତ ହର୍ମ୍ମ୍ୟର ଭଗ୍ନାବଶେଷରେ ତରୁଗୁଲ୍ମ ଅଧିକ ପରିମାଣରେ ଦେଖାଯାଏ । ଏହିବୃକ୍ଷ ପ୍ରସ୍ତରଗୃହର ଶତ୍ରୁ ବୋଲି ବିଖ୍ୟାତ ।

( ୨ ) ଚୌଦ୍ୱାରର କପାଳେଶ୍ୱର ଗଡ଼ର ଭଗ୍ନାବଶେଷ ଉତ୍କଳରେ ସର୍ବାପେକ୍ଷା ପ୍ରାଚୀନ ବୋଧହୁଏ ।

ବାରୁଣୀ-ଗଗନ        ଭିତ୍ତି ପ୍ରାଏ ପୃଷ୍ଠେ
ଦଗ୍ଧ ଶୈଳ-ପ୍ରାଚୀର ,
ଶାନ୍ତିସ୍ୱରୂପୀ        ପୁଷ୍କର ନିଦବେ
ଯେଭେ ଯେତେ ବର୍ଣ୍ଣି ଖେଳେ,
ଚୂଳେ ଖେଳୁଥିଲା        ସେହି ବର୍ଣ୍ଣ ତାର
ଦେଉଳର 'ଧ୍ୱଜ-ଚେଳେ ,
ପ୍ରାଚୀର—ନଗମେ        ବହୁଥିଲା ତାର୍
ଇନ୍ଦ୍ରନୀଳା କାନ୍ତିରୂପା
ତରଙ୍ଗ—ମାଳିନୀ        କଳ ନିନାଦିନୀ
ପ୍ରସନ୍ନ —ନୀର୍ ଦରୂପା ,
ପ୍ରଦୋଷ-ସ୍ୱରଣେ        ଦୂରୁ ପୃଷ୍ଠ ଦେଖି
ମଗଧ ରାଜ— ନନ୍ଦନା-
ଚିତ୍ତେ ହେଲା ପ୍ରତେ        ଶୈଳକି ପିନ୍ଧିଛି
ଦାବାନଳର ଓଢ଼ଣା ?
କେମ୍ନା ସଙ୍ଗେ ବାଳା— ମୃଗାକ୍ଷୀ ମାଗଧୀ
ପ୍ରବେଶନ୍ତେ ସେ ନଗରେ,
ରାଣୀଦିଲେ ପାନ୍ଥ — ମହାଦେଈ ତାଙ୍କୁ
ସଂଖେଳି ନେଲେ ଆଦରେ ,
ଶୋଭା-ଖଣ୍ଡି—ରତ୍ନ        ଶଳାକା-ରୂପିଣୀ
ହେବ୍ ସେ ନବକଶୋରୀ

ମୃଗଚର୍ମଧାରୀଙ୍କ    ନୂତନ ବସ୍ତ୍ରେ
ଯାଚକ ଗଲା ଝଡ଼ୋର ,
ସେରୂପ ଦର୍ଶନେ    ଗଜ—ଅବରୋଧ
ରୂପମଦ ହେଲା ଚୂନା ,
ଛଳିଲେ "ଉଦ୍ୟାନ    ଫୁଲୁଁ ବନଫୁଲ
କେଉଁ ଗୁଣେ ଅଛା ଊଣା !
ଏବାଳାଙ୍କୁ ବନ — ବାସ ସହାଉନେ!
ବଧି ଅଛା କ୍ଷାଗ୍ରରେ ?
ଶମୀ ଛେଦିବାକୁ    ଲୋଡଲେ ବିଧାତେ
ନୀଳୋତ୍ପଳ ଦଲଧାରେ !"
ପ୍ରେମାଦରେ ଛେମା    ନୃପ ଚଉଁରଙ୍କ
ଚମଳାଙ୍କୁ ଗଲନେଇ ,
ପ୍ରେମ ଯୋଗୁଁ ଯେଣୁ    ହୋଇଥିଲେ ବେଶ
ବେହ୍ନାଦେବେ ଏକଦେହୀ
ଏକଦେ ଅଶନ    ଅବ ନୀଦ ସାର
ଶୋଇଲେ ଏକ ପର୍ଯ୍ୟଙ୍କେ,
ଶାନ୍ତ ଲଭିବାକୁ    ନିଦ୍ରାଦେବୀଙ୍କର
କୁସୁମ-କୋମଳ—ଅଙ୍କେ,
ଏକଶଯ୍ୟା ହୋଇ    ଥିଲେହେଁ ଦେହଙ୍କ
ହୃଦୟେ ଭିନ୍ନ ଭାବନା ,

ଏକର ପ୍ରଶାନ୍ତ—  ନିଦ୍ରାଭୋଗ, ମାତ୍ର
ଆନର ପନ୍ଥ-ବେଦନା ,
ଚିମଲା ସଙ୍ଗତେ  ଅବଧିଭେଟ କାଳେ
ଜନମିଥିଲା ଯେ ଭ୍ରମ ,
ଯେଉଁ ଭ୍ରମ ରଙ୍ଗେ  କ୍ରୂର ଫୁଲଧନୁ
ବିଦ୍ଧିଲ କେମା ମରମ ,
ଭ୍ରମସଙ୍ଗେ ସେହି  ସୁତୀକ୍ଷ୍ଣ-ବିଶିଖ
ହୋଇଥିଲେହେଁ ଉତ୍‌ଘାତ ,
ନିଃଶେଷେ ବିଶଲ୍ୟ  ନୋହି ଅନ୍ତରିକ୍ଷେ
ଶୁଖି ନ ଥିଲା ସେ ଘାତ ,
ଭସ୍ମାବୃତ ବହ୍ନି  ପ୍ରାଏ ଅନ୍ତସ୍ଥଳେ
ଲୁଚିଥିଲ ସେହି କାମ ,
ବିମଲାକୁ ଶଯ୍ୟା—  ସହଚର ଦେଖି
ପୁଣି ତା ହେଲା ଉଦ୍ଦାମ ,
ସେ ଉଦ୍ଦାମ କାମ  ନୁହେ ତୃପ୍ତି-କ୍ଷମ
ପାରୁଥିଲା ବାଳା ଜାଣି ,
ମାତ୍ର ସେ ନୈରାଶ୍ୟ  ସେହି ବାସନାରେ
ଧାର ଦେଉ ଥିଲା ଶାଣି ,
ଜାଣୁଥିଲା ବାଳା  ଶୟନେ ତନୁକୁ
ଏପଟେ ସେ ପଟେ ରଖି ,

ଅଭ୍ରରେ ବିଦ୍ୟୋଷ-   ବେଗୀ ଗତେ ଯଥା
ଘୋଟିଲେ ଶଯ୍ୟା କଣ୍ଟକୀ ,
ଶୁଷ୍କ-କଣ୍ଠ-ତାଳୁ   ଜ୍ୱରରୋଗୀ ଯଥା
ତୃଷାରେ ହୋଇ ଅସ୍ଥିର
ସଂକଳ୍ପେ ପିଅଇ   ବୃଷ୍ଟି ପୂର୍ବ ଯେତେ
ନଦୀ ସରସୀର ନୀର ,
କମଳାକୁ ଜେମା   ସଂକଳ୍ପେ ପୁରୁଷ
ଗଢିନେଇ ସେହ୍ୱପର
ଲଲିତ ସମ୍ଭୋଗ—   ପୀତମାନ ମନେ
ଅଚରନ୍ତି ଅନ୍ତୋଦସୀ ,
ସେ ସଂକଳ୍ପ-ସୁଖେ   ତୃପ୍ତି କାହିଁ ? ସେ ତ
କେବଳ ତୃଷା—ବର୍ଦ୍ଧକ !
ପୁରାଇଲା, ଅବା,   କେଉଁ କାଳେ କାହା
ଉଦର ମନମୋଦକ ?
କ୍ରୂର—ସ୍ପୃଷ୍ଟ କ୍ଷଣେ   ଭାଙ୍ଗି ଦେଉଥିଲା
ସଂକଳ୍ପ ସ୍ୱର୍ଗ ପ୍ରାସାଦ
କନ୍ଧ୍ୟ ଝଂକାରେ   ଭଗ୍ନ ପ୍ରାଏ ଅଣି
ଦ୍ୱିଗୁଣ ହୃଦେ ବିଷାଦ ,
ନିଦ୍ରା:ପଥ ନେବେ   ରୁଦ୍ଧ ହେଉଥିଲା
କ୍ଲେଶକ—ବନ୍ଧୁ—କଳାପେ ,

ଶୁଣି ଯାଉଥିଲା  ଶତ୍ରୁ ବମ୍ବାଧର
  ଶୋକ ଉଚ୍ଛ୍ୱାସର ଛାପେ ,
ଏ ପ୍ରପଞ୍ଚେ ପୁଣି  ପ୍ରପଞ୍ଚ ଭିଆଣ—
  ଶକ୍ତି ଯାର ନାରଗିଲା ,
ଦେଶ କାଳ ସୀମା—  ଲଂଘୀ ଅଘଟନ-
  ଘଟନେ ସଦା ଲୁଶଲା ,
ନିଦ୍ରା ସଖୀ ସ୍ୱପ୍ନ—  ଦେଖା କଦାଚିତେ
  ସୁଖ ଦେଉଥିଲେ ଆଣି ,
କ୍ରୂର ଜାଗରଣ  ଦେଉଥିଲା ପୁଣି
  ଅଙ୍କୁରେ ସେ ସୁଖ ହାଣି ,
ଲୌହକାର ଖଣ୍ଡ — ଏ ଆସି ପ୍ରାଏ ସ୍ୱପ୍ନ
  କ୍ଷଣେ ସୁଖମୟ ଜଳେ
ବୁଡାଇ, ପୋଡାଉ  ଥିଲା ତାକୁ ପୁଣି
  ପରକ୍ଷଣେ ଦୁଃଖାନଳେ ;
ସୁପ୍ତି-ବନାଟିନୀ  ଭ୍ରାନ୍ତି-ବିଳାସିନୀ
  ସ୍ୱପନଦେବୀ କୁହୁକେ
ଲଜ୍ଜିତା ପୁରୁଷ—  ରୂପେ ବମଳାଙ୍କୁ
  ଭିଡନ୍ତେ ଗାଢେ ସ୍ୱ ବୁକେ ,
ଜାଗରଣ ଆସେ  ନିମିଷେ ସେ ସ୍ୱପ୍ନ
  ଦେଉଣ ଥିଲା ସଂହାର ,

ଦେଖୁଥିଲା ପୁଣି ବିମଳାକୁ ତେମା-
ଯେ ନାୟିକ ସେହି ନାରୀ ,
ମାଂସ୍ୱାକ୍ରାନ୍ତ ଚୁମ୍ବ- ଯୋଗୁଁ ତା କପୋଳ
ଉଲୁସି ଉଠିଲା କ୍ଷଣେ
ଫିକା ହୋଇଥିଲା ତାହା, ଆହା, ସେହି
ବିଷାଦର ଜାଗରଣେ ;
ଭୃଙ୍ଗ ଲତା ପାଶେ ସ୍ୱପ୍ନେ ମାଂସ୍ପାଡାନ୍—
କଣ୍ଠକୁ ଧରନ୍ତେ ତାଙ୍କ
ଜାଗି ଦେଖୁଥିଲା ଶୂନ୍ୟକୁ ଅଙ୍କଟେ
ଭିଡନ୍ତି ସିନା ବକ୍ଷ ,
କଳ୍ପିତ ଭୃଙ୍ଗେ ବନ୍ଧନର ବାଳା
କାନ୍ତକୁ ପ୍ରେମ କୌତୁକେ
ଜାଗି ଦେଖୁଥିଲା କରମାଣ୍ଡି ମାନ୍ଦ
କୁଣ୍ଢାଇଛନ୍ତି ଭ୍ରାନ୍ତ ସୁଖେ ,
ଜାଗରର ଯେତେ ସଂକଳ୍ପ ତନ୍ଦ୍ରାରେ
ଫଳୁଥିଲା ସ୍ୱପ୍ନାକାରେ ,
ଭୋଗୁଥିଲା ସ୍ୱପ୍ନ— ପୁଂସ ରୂପସୀଙ୍କ
ଅନୁକୂଳ—ବଳାତ୍କାରେ ,
ସ୍ୱପ୍ନେ ଲଜ୍ଜେ ବାଳା ପଳାଇବା ବେଳେ
ପଣ୍ଡିଠୁଣ—ପରସ୍ପଙ୍ଗ

ଅଚରନ୍ତେ କାନ୍ତ,    କର ଦେଉଥିଲ୍
ଜାଗର ସେ ରସ ଭଙ୍ଗ ,
ମର୍ତ୍ତ୍ୟେ ସ୍ୱର୍ଗ-ସୁଖ    ଆଣି ଦେଉଥିଲ୍
ସ୍ୱପ୍ନ ହୋଇ ଅକ୍ଷାକାଙ୍କ୍ଷୀ ,
ନାହିଁ ସେହି ସୁଖ    ଯାର ଦେଉଥିଲ୍
ଜାଗର ହୋଇ ଉଦାସ !
ଜୀବନ କେବଳ    ଦୀର୍ଘ ସ୍ୱପ୍ନ ମାତ୍ର
ଜ୍ଞାନୀଙ୍କର ଏହା ମତ ,
ଲଳନା ବାଞ୍ଛିଲ    ଏ ସ୍ୱପନ ହେଉ
ପୁଣି ସ୍ୱପ୍ନେ ପରିଣତ ,
ବୋଇଲ୍ ଛଇଲା    " ସୁଖ ଦେଇ ହାୟ
ଯାଥିଲ କିପାଁ ଏ ବାଦ ?
ଜାଗରଣ-ଦୁଃଖ    ଯେଣି ଭୁଆଇଲ୍
କି ହରଷେ କେତେ ବିଷାଦ !
କିପାଁ ସ୍ୱପ୍ନ-ରାଜ୍ୟ—    ଘଉଡାଇ ମୋତେ
ଦେଲ୍ ଏତେ ଜରଢରେ ?
ସୁଖର ଶଇଳ—    ଶୃଙ୍ଗୁ ପେଲିଦେଲ୍
ଗଭୀର—ଦୁଃଖ—ଗହ୍ୱରେ ,
ଦେବ ପୁଷ୍ପବାଣ,    ତୋହ ବରେ ପୁଣି
ଏ ସୁଖ ଭୁଞ୍ଜଇ ପ୍ରାଣୀ !

ସୁଖେ କଟି ସୁଦ୍ଧା ଅଛଯାଏ ମୁହିଁ
ଏ ସୁଖ ନଥିଲି ଜାଣି ,
ମନ୍ଦାଯାଏ ତନୁ ଉଲୁସି ଉଠିଲା
କି ମଧୁର ସୁଖେ ରସି ,
କାହିଁଥିଲି, ଜନ୍ମି ଦୁର୍ଯ୍ୟୋଗକୁ ଏବେ
କାହିଁ ମୁଁ ପଡ଼ିଲି ଖସି ,
ଏବେ ସୁଦ୍ଧା ଲାଗି ସେ ସୁଖ ତରଙ୍ଗ
ଘାତ କରେ ଦୁକୁ ଦୁକୁ ,
ସ୍ମରଣେ ଯାହାର ଏତେ ସୁଖ , ସୁଖ
କି ଅଛି ବଳି ସେ ସୁଖୁଁ ?
ବାଣ-ଦୃଷ୍ଟା ସ୍ୱପ୍ନ— ପୁଂସ ସଙ୍ଗେ ମାତ
ନାନାରଙ୍ଗେ ପ୍ରେମୋଲ୍ଲାସେ
ଚେତ ଚତୁର ସେ ପୁଂସ ରତନକୁ
ଅଣାଇଲା ନିଜ ପାଶେ;
ସତେ ଥିଲାକୁ ସେ ପୁଂସ, ସୃଷ୍ଟି ହେଲା
ଜାଗରଣେ ଭାଗ୍ୟବଶି ,
ଅବସ୍ଥରେ ଯେଣୁଁ ଜଙ୍ଗନ ମୋହର
ସ୍ୱପ୍ନ ଏବା ମୋର ଗତ ;
କରନ୍ତେ ତ ବଧ ମାଗୁଛିଁ ପର୍ଯ୍ୟନ୍ତରେ
ଦିଅ ମୋତେ ଏହି ବର ,

ସ୍ୱପ୍ନ ସୁଖ-ସ୍ୱର୍ଗେ ଚିରଦିନ ଲାଗି
ବସନ୍ତ ହେଉ ମୋହର ”
ନେତ୍ର ନୀରେ ପୃଷ୍ଠି ସିକ୍ତ ହୋଇ ଧନ୍ୟା
ବୋଲେ ଦୁଃଖ-ଅସମ୍ଭାଳେ
“ ଅଲୋକିକ କଥା ବିଧିକି କେବଳ
ଲେଖିଥିଲ ମୋହ ଭାଲେ ?
ପ୍ରେମତନ୍ତ୍ର ମତେ ପୁଂସଙ୍କେ ପ୍ରମଦା,
ପ୍ରମଦାରେ ପୁଂସ ରତ ,
ଚତୁର୍ଦ୍ଦିଶ ପୁରେ ଚଳୁଅଛି ଏହି
ବିଧିର ବିଧି ଶାଶ୍ୱତ ,
ରଙ୍ଗ ରସେ କେବେ କୁରଙ୍ଗୀ ଠାରେ କି
ରସଇ କୁରଙ୍ଗ—ନାରୀ ?
ବିହଙ୍ଗୀ କି ହେଉ ବିହଙ୍ଗୀ କି କେବେ
କାମ ଶରେ ହୁଏ ଘାର ?
ପୁରାଣେ ଶୁଣିଛୁ ଭିନ୍ନ ଯୋନି ହୋଇ
ପୁରୁଷେ ନାରୀର ପ୍ରୀତ ,
ଶୁର କରମରୁ ଛନ୍ଦୁଁ ବଳଗଲା
ମୋର ଏ ପୀରତି ସତ ,
କି ଜଙ୍ଗମେ, କିବା ସ୍ଥାବରେ ବିଧାନ
ପ୍ରବଳ ସଦା ବିଧିର ,

ଲତା ସଙ୍ଗେ ଲତା ପ୍ରେମାମୋଦେ କେବେ
ଛିଣ୍ଡି କି ହୁଏ ଶରୀର ?
ଏଣୁ କୁଟିକୁଟା ଭିଆଇଲା, ଅବା
ହସ୍ତିଅ କେଲିତ—ପଥ ?
ତରୁଣୀଙ୍କି ପୁଣି କରିଦେଲ ଅନ
ତରୁଣୀରେ ସ୍ମୃତାବଣୀ ।
ଜଦାରୁଣ ଭାଗ୍ୟ ନାରୀଙ୍କ କରୁଛ—
ଦେଲ ମୋର ମନୋରେର !
କ୍ଷଣେ ଘୋର ପ୍ରାଏ କଲ ଛାକୁ ପୁଣି
ଶଯ୍ୟନ-ସଙ୍ଗୀ ମୋ ତୋର !
ସୁଖଦେଇ , ସୁଖ ୯ୟ ପଥେ ବଜ୍ରଘାତ
ଦେଇ ବୁଡିଦେଲ ଗ୍ରୀବା ,
ଛଳେଥାଇ ଯିନା , ସେ ଛଳ ବହ୍ନିନେ
ତୃଷାରେ ମଲ ମୁଁ ଅବା !
ଯେନାଇ ବଦ୍ଧଲ ଅବୋଧ ମନକୁ
ବୋଲି ମୋର୍ ଯେନ୍ନୁ ନାହିଁ ?
ଅଥଯ୍ୟେ ଦଲ୍ଲିତ ସଂକଳ୍ପର ପଥେ
ବାହୁଡଇ ବାଧା ପାଇ ,
ଅଷାଭୂମେ ଯିନା ଛନ୍ଦେ ପ୍ରେମାଙ୍କୁର,
ବଚିଲ ଅଶା ସକଳେ ,

ନୈର୍ଗ୍ୟ-ଉଷରେ   ପ୍ରେମ-ବୀଜ, ଅହା ,
ସୁଫଳ ହେବ ବୁଣିଲେ ?
ତୃଷା ଝଁପା ମୁଗ୍ଧ   ମନ୍ନାସିଲ ମନେ
ମୃଗତୃଷ୍ଣିକାରେ   ସ୍ନାନ ?
ମୋହର ଭାଗ୍ୟେକି ଲେଖାଥିଲା , ଅହା,
ଲୋଡ଼ିବା ଶସ୍ୟ – ପାଷାଣେ ?
କାହିଁ ସେ ହୃଦୟ   ଯେ ହୃଦୟବଳେ
ପୁରୁଷ ହେବ ରମଣୀ ?
ଦେବ ହେଲେ ଶକ୍ତି   ନାହିଁ ଓଲଟାଇ—
ଦେବାକୁ ବିଧି—କରଣି ,
ନୋହିବାର ଯାହା   ଏମନ ବିଷମ—
ବାସନାକୁ ମନେ ପୋଷି ,
କାହିକି ଦୋଷି ହୋଇ,   ଅକାରଣେ କିପାଁ
ବିଧିଙ୍କ କରୁଛୁଁ ଦୋଷୀ ?
ବିଧି ସୃଷ୍ଟି କ୍ରମ—   ପ୍ରତାପେ ବାସନା
ଯୋଷଇ ହୃଦେ ଯେ ପ୍ରାଣୀ
ତୃଣ ହୋଇ ସିନା   ଭାସିବାକୁ ଲୋଡ଼େ
ପ୍ରପାତ—ସ୍ରୋତେ ଉଛାଳି !
ତୁମେ ପଡ଼ ମୁହିଁ   ପ୍ରେମ-ସ୍ରୋତେ ମନ-
ଚରକି ଦେଲ ଭସାଇ ,

ଭ୍ରମ ଛୁଟିଗଲା,   ମାତ୍ର ସେହି ମନ—
ଉତ୍ସ ତ ଫେରିଲା ନାହିଁ ,
ନୈରାଶ୍ୟ-ଚକ୍ରରେ   ଲାଖି ରହିଲା ସେ,
ବାହୁଡ଼ିବ ନାହିଁ ଆଉ ,
ତାର କୌମାର ଯା   ମନାସେଣ ଥିଲା
ସାଧିଲା ବି ସେ ଦାଉ ! ”
ଥରେ ଥରେ ଶେଯ   ତେଜି ବରାଙ୍ଗନା
ଭ୍ରମୁଣ ଥିଲା ପ୍ରାଙ୍ଗଣେ ,
ଚନ୍ଦ୍ରାଲୋକେ ଧୌତ—   ଧରଣୀ ଗଗନ
ଦେଖୁଥିଲା ଶୂନ୍ୟ ମନେ ,
ସୌଧ ଗୃହ ପାଶେ   ପୁଷ୍ପୋଦ୍ୟାନେ ପୁଷ୍ପ-
ପଲ୍ଲବ—ଭାରେ ନମିତ—
ତରୁତଳେ ଅନ୍ଧ—   କାରେ ହୋଇଥିଲା
ଜ୍ୟୋତ୍ସ୍ନା ଢଳ-ଉଜ୍ଜ୍ୱଳିତ , (୧)
ପୌର୍ଣ୍ଣମାସୀ-ନଭେ   ଶୋଭୁଥିଲେ ଦେବ
କ୍ଷୀରାବ୍ଧି—ଶୁକ୍ତି ମୌକ୍ତିକ ,
ତାରା ଗୋଷ୍ଠେ ଷଣ୍ଢ   ଅଖଣ୍ଡ ଚନ୍ଦ୍ରମା

---

( ୧ ) ଉଜ୍ଜ୍ୱଳ ଶ୍ୱେତ , ଢଳ କୃଷ୍ଣବର୍ଣ୍ଣ ଅର୍ଥାତ୍ ଛାୟାରେ ଜ୍ୟୋତ୍ସ୍ନା ଚିତ୍ରବିଚିତ୍ର ହୋଇଥିଲା [ chequered ]

ସୁରଧୂନି—ପୁଣ୍ୟଶୀକର ,
ବିଯୋଗିନୀ ନିର୍ମ୍ମ- ଳେନ୍ଦୁ-କାମଚନ୍ଦ୍ର ,
ସଂଯୋଗିନୀ ହୃଦାହ୍ଲାଦୀ ,
ମୁଗ୍ଧ ଦିଗଙ୍ଗନା - ବିଭ୍ରମ — ଦର୍ପଣ ,
ଶୃଙ୍ଗାର- ଅଦ୍ୱୈତ — ବାଦୀ ; (୧)
କୋଟି ଜ୍ୟୋତି—ପୁଞ୍ଜେ ମଣ୍ଡି ନୀଳ ବପୁ
ବହୁଥିଲା ଦୁର୍ଗି ପାଦେ
ବିରୂପା ମିଶାଇ କଳ କଲନାଦ
ସୁଗମ୍ଭୀର ଝିଲ୍ଲି ନାଦେ ,
ଉତ୍ତୀର୍ଣ୍ଣ ପର୍ବେ ଅଭ୍ରସ୍ପୁଣ ଥିଲ
ସୁଧାଂଶୁ — କିରଣେ ଭାସି
ଚକ୍ରବାଳେ ଶୈଳ , ବନ , ଉଚ୍ଚଭୂମି ,
ନଦୀଶଯ୍ୟା , ନଦୀନାସୀ ,
ଦିଶୁଥିଲା ଦୂରେ ଦିଗନ୍ତ—ବିସ୍ତାର
ଚନ୍ଦ୍ରିକା—ସ୍ନାତ— ସୈକତେ
ନୀଳମନ୍ଦାନଦୀ , ଦିଷ୍ଟୁକ ଶାନ୍ତିଭ
କ୍ଷୀରୋଦ ଶୟନେ ଯତେ ?
ବ୍ୟୋମ-ଗଙ୍ଗା ନୀରେ ନାରିକେଳ ରଛ

---

(୧) ଶୃଙ୍ଗାରରସ ବ୍ୟତୀତ ଅନ୍ୟ ଜଗତରେ କିଛି ନାହିଁ ଏହି ମତର ପ୍ରଚାରକ ।

ପୂର୍ଣ୍ଣାଙ୍ଗନା କ୍ଷେପଣୀରେ
ଛୁଟା ଲୁଚି, ପଡୁ ଥିଲକ ଅସି ତା
ଧୂମଛଳେ ଧରଣୀରେ ?
ମାନିନୀ ଚକୋରୀ — ମାନ ଫେଡୁଥିଲା
ଚନ୍ଦ୍ରିକା—ପିୟୂଷ —ପାୟୀ
ସହକାର - ଚୂଳେ ଚଟୁଳ ଚକୋର (୩)
ନିଜ ପ୍ରେମଗୀତ ଗାଇ ,
ସଙ୍କେତେ ଉଡ୍ଡୀନ ପ୍ରେୟସୀର ପ୍ରେମ—
ଗର୍ବେ ପ୍ରତିରବ ଦେଇ ,
ଉଡ଼ି ଯାଉ ଥିଲା ଉଲ୍ଲାସେ ଟିଟ୍ଟିଭ
ସଙ୍ଗୀତ କମ୍ପା ସେ ଦେଖି ?
ଶୀତ ଦ୍ୟୁତ—କରେ ଦ୍ୱିଗୁଣେ କେମାର
ବଢ଼ିଲା ହୃଦ ତପତ ,
ତା କେବେ ଚନ୍ଦ୍ରମା ଦଶିଲେ କଡା ସେ
ମନ୍ମଥ — ଶୃଙ୍ଗାର କ୍ଷତ ,
ଚକୋର - ଟିଟ୍ଟିଭ ସ୍ୱର ଶୁଣି ବାଳା
ଦ୍ୱିଗୁଣେ ହେଲା ଆକୁଳ ,
ଅନନ୍ତର ଧ୍ୱନି ଉଦ୍ଘୁଟାଏ ସିନା

---

( ୩ ) ପପେୟା ବାଲେଶ୍ୱର ଜିଲ୍ଲା ଏବଂ ଖୋର୍ଦ୍ଧା ଅଞ୍ଚଳରେ ଏହା ସଚରାଚର ଦେଖାଯାଏ

ଦୁଃଶୀର ଘବଣ — ଶୂଳ !
କଷ୍ଟରେ ସାନ୍ତ୍ୱନା     ଲଭୁ ଥିଲା ଧର୍ମ
ମର୍ମ୍ମ ଭେଦୀ ସେ ସନ୍ତାପେ
କରୁଣା ତଟିନୀ — ତଣ୍ଡି     ପଠାଗୃର —
ରଥାଙ୍ଗ — ବଧୂ — ବିଳାପେ,
ରଥାଙ୍ଗୀ କଣ୍ଠୁଁ     କହିଲା "ଦବର୍ଣ୍ଣି ,
ଝୁରୁ କାହିଁ ମୋହପର ?
ଅଶ୍ୱାସନା ପାଇ     ଅଚ୍ଛୁଛ ତୋହର
ସଙ୍ଗେ ଅଣା ସହଚରୀ ,
ବଞ୍ଚିବଣି ତୋର     ବିରହ — ଅବଧି ,
ଏଥିକି ଏତେଶିଁ ଦୀନା ?
ଏବିରହ ତୋର     ମିଳନର ସ୍ୱାଦୁ
ବଢ଼ାଇବାଲାଗି ସିନା ;
ଅଟର ବିରହେ     ଗ୍ରନ୍ଥ ତୋର ଏଡ଼େ
ଦେଉଛୁ ଦୁଃଖେ କରଛ ,
ମାଣ୍ଡ ମୋହ୍ନ ସଙ୍ଗେ     ଭାଗ୍ୟ ବିନାମଯ୍ୟେ
ଚଳାଇନ୍ତୁ କି ଗୁ ମଛ ?
ସୁଶାନ୍ତ କରବ     ସନ୍ଧାନପାର ରୁ
ହାତ ଭାଗ୍ୟ ମଣ୍ଡୁ ମନ୍ଦ ,
ଏଅନ୍ଧାର ଢୋର     ଝଣସ୍ଥାୟୀ ସିନା ?

ମୁଯେ ବେନି ନେଦେ ଅନ୍ଧ !
ନିଶାରେ ଦେଖୁଛୁ ଆଶା ମୂର୍ତ୍ତି, ଉଷା—
ଅନ୍ତେ ଦେଖୁ କାନ୍ତ ମୁଖ ,
ସୁଖସୀମା ସିନା ମୋ ଲେଖାରେ ତାହା ,
ତୋ ଲେଖାରେ ଯାହା ଦୁଃଖ, ”
ବାହୁନି ବାହୁନି କାନ୍ଦିଲ ଏରୂପେ
ନୟନେ ଚନ୍ଦ୍ରାନନୀ
ନ ଶୁଭିବା ଯାଏ ବଳ—ବହିଁ ଯିଥ
ଭରଛଥ ବଂଶୀଧ୍ୱନି ,
ବରୂପାର ପାଟେ ସେବକଙ୍କ ତୃଣ—
ଶଯ୍ୟାରୁ ଶୋଇ ଉଠିଲ
ନୀଳବ୍ୟୋମେ ଉଠି ଚାଲିଲ ତାହାର
ଅମର୍ତ୍ତ୍ୟ ମର୍ତ୍ତ୍ୟ — ସଙ୍ଗୀତ ,
ଦେଖୁଁ ଦେଖୁଁ ଦେଖା ଦେଲ ପାଟଳମା
ପର୍ବତ—ମୂଳେ ବର୍ତ୍ତି
ତାମ୍ରହାସ୍ୟ ତମୋସିନ୍ଧୁରେ କି
ପ୍ରବାଳ ନିକୁଞ୍ଜ ଗୃଢ଼ ?
କାହିଁ ନେତ୍ରସ୍ତା ଥଲା, କାହିଁ ପୁଣି ଉଲ୍ଲା
ମସୀପ୍ରଭ ଅନ୍ଧକାରେ ,
କାହିଁ ଫୁଲ୍ଲ ପଦ୍ମ— ପଦ୍ମେ ହାସ୍ୟ ,

ପ୍ରାତଃ ସନ୍ଧ୍ୟା ରକ୍ତିମାରେ
କାହିଁ — ରଙ୍ଗବର୍ଣ୍ଣ., ଦିଶିଲା ବ୍ରହ୍ମାଣ୍ଡ
ନଗାନ୍ତେ ଚାପ ଦୃଢାଙ୍ଗ ,
ଉନ୍ମୀଲିତ ହୋଇ ଢୁଲରେ ଯୌବନ
ଶୋଭେ ବର୍ଣ୍ଣୋଜ୍ଜ୍ୱଳ ଚାପ ,
ପ୍ରାଚୀ—ଗିରିଅଙ୍ଗେ ଫିଟିଗଲା ଏବେ
ବିଭାବରୀ — ଯବନିକା ,
ଅଭିନେବା ପାଇଁ ସୃଷ୍ଟିସ୍ଥିତି ମଞ୍ଚ—
ଅଭିନ—ମହା ନାଟିକା ,
ସମୁଜ୍ଜ୍ୱଳ—ବେଶେ ଉଭାହୋଇ ଦେବ
ପ୍ରଭାମୟୀ ଦେହି ମଞ୍ଚରେ
ସୂତ୍ରଧାର ରୂପେ ତାରାପୁଷ୍ପ — ପୁଞ୍ଜ
ଫିଙ୍ଗିଲେ ରଙ୍ଗ୍ ସ୍ଥଳରେ;
ବାଲାତପ ଠାବେ ଠାବେ ଶୈଳଦେହେ
ଦେଖି ହେଲା ମନେ ପ୍ରତେ
ସଦ୍ୟ ପକ୍ଷଛିନ୍ନ ହୋଇଛି ଶୋଣିତ
ସ୍ରବେ ତାଙ୍କ ଦେହୁଁ ସତେ ?
ନିଦ୍ରା ପରିହରି ନଳିନୀ ସୁନ୍ଦରୀ
ସୁଷମା କଲା ବିସ୍ତାର ,
ଭୃମୁଦନୀ ଠାରେ କେମାଠାରେ ନାଂସ୍ତ-

କର ନିଜ ଦୁଃଖ—ଭାର ;
ଚନ୍ଦ୍ରା ପରିହରି   କମଳା ସୁନ୍ଦରୀ
ଧରି ଲଳିତାର ପାଣି
କାନ୍ଦୁଥିବା ଲାଗି   ସ୍ୱ ବାସେ ମାଗିଲ୍ଲ
ବନସ୍ତ—ଘଣ୍ଟେ ମେଲ୍ଲଣି ,
"ଅଲୁଦନେ ଅପି   ଭେଟିବ ଶମ୍ଭୁରେ"
ଅଶ୍ରୁମୁଖୀ ଲଳିତାଙ୍କ
ଅନୁରୋଧେ ଏଥି   ପ୍ରତିବାଣି ହୋଇ
ସେ ପୁରୁ ହେଲ୍ଲ ବାହାର ,
ଯାମାକାଳେ ତାଙ୍କୁ   ମହାଦରେ ଛେମା
ମହାର୍ଘ — ଶାଢି ପିନ୍ଧାଇ
ନିଜ କଣ୍ଠୁ ରତ୍ନ—   କାଢି ନେଇ ହାର
କଣ୍ଠରେ ଦେଲ୍ଲ ଲମ୍ବାଇ ,
ଗୌର ମଣିବନ୍ଧେ   ପିନ୍ଧାଇ ଅବର
ଦେଲ ଇନ୍ଦ୍ରମଣି ମାଳା ,
ଘଣ୍ଟ—କୁଚ—କଲି-   ଅବରଣେ ଦେଲ୍ଲ
ସୁଗ୍ୱରୁ ରତ୍ନକାଞ୍ଚୁଳି ,
କମଳା ଗଳାରୁ   ହରଷ — ସନ୍ତାପେ
ବିବର୍ଣ୍ଣ ହେଲା ସେ ଗ୍ରୀବା ,
ଚନ୍ଦ୍ରିକା-ସଜନୀ   ଶୁଭଗଲେ ଭଜେ

କାଳିମା ସିନା ନିଦାଘ !
ବୈଶାଖର ଖର    ପବନ ପରଶେ
ସହଜେ କ୍ଷୀଣ—ଜୀବନୀ
ମଲ୍ଲିକା , ଅହୋ ,    ନଅଇଲ ଲଜ୍ଜାରେ
ନବପୁଷ୍ପ — ସ୍ତବକିନୀ ?
କର - ପଦ୍ମେ ଗଣ୍ଡ—    ମଣ୍ଡିଲ ବନବାସି
କରୁ ଥାଇ ବାଳା ଧ୍ୟାନ ,
କୃଶାଙ୍ଗୀରେ କେଳି    ଗ୍ରୀଷ୍ମଙ୍କ ମୂର୍ତ୍ତି—
ମୃଣାଳୀ ପରାଏ ମ୍ଳାନ ,
ଫିକାହୋଇ ଗଲା    କାନ୍ତ ମୁଖ କାନ୍ତି
ବଧୂ ଯଥା ଦିବାଭାଗେ ,
ବନାନ୍ତ ଭାଗନେ    ଦଗ୍ଧ ହେଲ ଧନୀ
ବସିନୀ ଯେସନ ମାଘେ ,
ଭୂଷଣ ଶୀତଳ    ଶୁଭ୍ର ଶେଯ ପଟ
ଜଳୁ ଥାଇ କୃଶୋଦରୀ ,
ତୁଷାର—ଭୂଧର——ପୃଷ୍ଠେ ନଶାଙ୍କରେ
ତୃଣ—ଜ୍ୟୋତିର୍ଲତା ପରି ,
କରଗତ ଦେବ —    ଦୁର୍ଲ୍ଲଭ ସମ୍ପଦେ
ଉଦାସୀନ ହେଲ ଧୀର ,

କରତୋୟା ପ୍ରାଏ (୧) ସରୋଜ-ନେତ୍ରୀର
ଦୃଷ୍ଟି ଦେଲା ସଦାନୀର୍ ,
ନଦୀଘେ ଶୃଙ୍ଗକୀ କାଦମ୍ବିନୀ ପ୍ରାୟ
ଯେମନ୍ତେ ଲକ୍ଷ୍ୟ ରଖି ଥାଇ ,
ଉତ୍କଳର କୂଳେ ରହିଲା କମଳା—
ଆଗମନକୁ ଅନାଇ ,
ଉତ୍କଳର କୂଳେ ଦୂତ ପଦେ ବର
ପେଷୁ ଥିଲା ତା ଅନ୍ତକ
ପଦ୍ମୋଦ୍ଧ , ପଥଶ୍ରୀ ଆହ୍ୱକର୍ ଯେତେ
ନଭସିନ୍ଧୁ ସଂଯାତ୍ରିକ ,
ଜଗଡରେ ଗଜ— [୮] ଦନ୍ତ—ବାତାୟନ—
ଦ୍ୱାରରେ ଜାହ୍ନୁ ବଦନ
ଶୁଣି ହେଉ ଥିଲା କମଳାର କଥା
ଉତ୍ତରସ୍ୟେ ଅନୁକ୍ଷଣ ,
ଉତ୍ତର୍ ପବନେ ଅଲଙ୍ଗନ ବାଳା
କରୁ ଥିଲା ଭୂଜ ତୋଳ
ମାଗି ଅସୁଁ ଅସୁଁ କମଳାର ଅଙ୍କ
ଛୁଇଁ ଅସିଅଛୁ ବୋଲ ,

---

(୧) ହିମାଳୟୋଦ୍ଭୂତ ବଙ୍ଗଦେଶୀୟ ନଦୀ । ଏହାର ଅପର ନାମ ସଦାନୀର୍ ।

## ଚତୁର୍ଥ ସର୍ଗ ।

ଭିନ୍ନଦିନ କାଳ ବନ୍ୟ ପଥେ ଭ୍ରମି
ପୁଣି ବୈତରଣୀ ତୀରେ
ସୋଦର ସହିତେ ମାଗଧୀ ସୁନ୍ଦରୀ
ମିଳିଲା ଯାଇ କୁଟୀରେ ,
ଅଦର୍ଶନେ ତାର ଯଯାତିର ମନ
ହୋଇଥିଲା ଶଙ୍କାକୁଳ ,
କେତେକ୍ଷଣ ଦେଖି ଦେଖିହେଲେ ଏବେ ,
ହରଷ ରସେ ପ୍ରଫୁଲ୍ଲ ,
କୁହୁଳେଣ-- ହେମା ସଙ୍ଗେ ଭେଟ ହେଲା
ହନରୁ ଆସିମୁ କର
ଘଟିଥିଲ ଯେତେ ଚରିତ ବିମଳା
କହିଲା ସବୁ ବବର ;
ଉପହାର ବସ୍ତ୍ର — ଆଭରଣ ମାନ
ଦେଖାଇ ହରଷ ମନେ
ପାଇଲି ସୁନ୍ଦରୀ ରଖିଲା ସେମାନ
ପେଡ଼ିରେ ଅତି ଯତନେ ,
ଲଲିତାର ଦଶା ଯଯାତି ନ ଯାହା
ଜାଣିଲା ବିମଳା ଠାରୁ ,
ତହୁଁ ବଳ ତାହା ଜାଣିଲା ସ୍ୱସ.ର

ସଲଜ୍ଜ ମୁଖ ଭଙ୍ଗୀରୁ ,
ଜାଣିଲି ଯା ଯେବେ ହୃଦ୍‌ଦେଶ—ଜେମା
ହୋଇଛନ୍ତି ଏତେ ଉତ୍ସୁକ ,
ଚତୁର—ଶ୍ରବଣେ ମୌନ ଠାବେ ଠାବେ
ହୁଏ ବଡ ବାବଦୁକ !
ଅଭିମନ୍ତ୍ର ବସ୍ତ୍ର — ଅଭରଣ ଦେଖି
ହୃଷ୍ଟହେଲେ ଯୁବାମଣି
ନୈରାଶ୍ୟ ନିଦାଘ ଅନ୍ତେ ତାକୁ ଆଶା—
ମେଘେ ବଦ୍ୟନ୍ତା ମଣି ,
ଶୁଷ୍କମଣ୍ଡ ଥିଲି ଜୀବନକୁ ଯେହୁ
ଏବେ ଆଶାଦୀପ ଲଭି
ଶୁଷ୍କପ୍ରାଏ ହୃଦେ ପ୍ରେମାଙ୍କୁର ତାର
ଉଠିଲା ପୁଣି ପଲ୍ଲବି ,
ଜନମ ଅନ୍ଧ କି ପରଶୁ ପାଇଲା,
ଅମୃତ ଜନମ—ଶ୍ରେଣୀ ,
ଲୋଚନ କି ଅବା ଅନ୍ଧ, ମୂକ ବାଣୀ,
ଅବା ମନ୍ଦାତତ୍ତ୍ୱ ଯୋଗୀ ?
କହିଲେ ସ୍ୱଗତେ " ଭାଗ୍ୟଦେବୀ ଆଜେ
ପେଷି ମୋର ମନୋରଥ ,
ଜେମାପାଶେ ଏବେ ଯିବାପାଇଁ ମୋତେ

ଫିଟାଉ ଦେଲେ ଏ ପଥ ,
ନଲଭ୍ ଲଭୁଛ      ବଲ୍ଲଭୀର ପ୍ରେମ
ଏଥିରେ ନାହିଁ ସଂଶୟ ,
ଅଙ୍କାଛେ ଚେତ୍ରଭ — ନେଇ ମୋ ହୃଦୟ
ଦେଇଛ ନିଜ ହୃଦୟ ,
ଯେଉଁ ପୁଷ୍ପାସ୍ତ୍ର      ବନ୍ଧିଲା ମୋ ହୃଦ
ବନ୍ଧୁଛି ସେହି ତା ହୃଦ ,
ମଣିଥିଲ ଯାକୁ      ଅରି କରି , ଏବେ
ସେ ମୋର ଇଷ୍ଟ ସୁହୃଦ ,
କମଳାର ବେଶେ      ଅନାୟାସେ ହେବ
ତୋମା ପାର୍ଶ୍ୱେ ଉପଗତ ,
ଝାଉ ଅନ , ଭେଦ      ବାର୍ ନପାରିବ
ଦେଖିଲେ ଚକ୍ଷୁ ସାରସ୍ୱତ ,
ତଥାପି ବିଷମ—      କଥା ଛଦ୍ମବେଶେ
ବେଢ଼ିବାର କେମାମଣି ,
କଣ୍ଟକ—ବେଷ୍ଟିତ      ପଦ୍ମ ସେ ରମଣୀ,
କମ୍ପା ଫଣି—ଶିରେ ମଣି !
ମଲେପଙ୍କେ ମୁହିଁ      ମରିବି, ଏକାଧେୟ
ପ୍ରାଣକୁ କରିବ ହତ ,
ଚନ୍ଦ୍ରଲେଖାଙ୍କୁ ସ୍ମୃଥା —      ହରଣେ କୁଇଣେ

ତାର କି ଥିଲେ ଗବୁତ ?
ଅଙ୍ଗ—କ୍ଷତ୍ର, ଅବା କ୍ଷେମା-ଅଙ୍ଗ-ସଙ୍ଗ,
ଲମ୍ପଟ —ଲଢ଼ି ମୋହର ,
ବଜ୍ର ପଡ଼ୁ ମୁଣ୍ଡେ , ବାଉ ଅବା ଭୁଣ୍ଡେ ,
ମେଘ ଗର୍ଜ ଗୃଭଙ୍କର ,
ଅନଳର ଶିଖା — ରୂପିଣୀ ଲଳନା
ଉତ୍କଳ—ଲାବଣ୍ୟ—ଗୁଣୀ ,
ପତଙ୍ଗର , କବା ଚକୋରର ଦଶା
କ ଅଛି ଭାଗ୍ୟେ ନଜାଣି ! ” (୧)
ଏହି ମତେ ଭାଳି ବିମଳା ସମ୍ମତେ
କ୍ଷେମା ଉପଚାର ମାନ
ସଙ୍ଗେ ନେଇ ଯୁବା କପାଳେଶଦୁର୍ଗେ
ଏକାକୀ କଲ ପ୍ରସ୍ଥାନ ,
ଯାହାଙ୍କାଳେ ଦେବୀ—ବିରଜା—ଶ୍ରମୁରେ
ଯାହାଙ୍କେ କର ପ୍ରଣତ ,
କରଯୋଡ ଭକ୍ତି- ଜଳ୍ପନ - ହୃଦୟେ

---

(୧) ପତଙ୍ଗ ଅନଳରେ ଦଗ୍ଧହୁଏ । ଚକୋ-ର ଅନଳକଣା ଅହାର କରୁଥିବାର କମ୍ବଦନ୍ତୀ ଅଛି ।

ଭଣାଉ ଗଲା ଏ ମତ
"ମାତା ବିଶ୍ୱଧାତ୍ରି,   ଜଗଦ୍ଭୟହାରି ,
ଦିଅ ବର କୃପାକରି ,
ତୋର ଏ କେଶରୀ ହେଉ ସଦା ମୋର
ବିପଦ କାଳ୍ କେଶରୀ "
ଦୁର୍ଗ ଉପକଣ୍ଠେ   ମହାବନେ ଦେଖ —
ଛଦ୍ମବେଶେ ହୋଇ ପ୍ରବେଶ ,
କେମା ଦଳ୍ ବୀର   ଭୂଷଣେ ରଚିଲ
କପଟ ଅବଳା ବେଶ ,
ପ୍ରଦୋଷେ ସେ ବେଶେ   ପ୍ରବେଶିଲ ବୀର
ଉତ୍କଳ ରାଜ ନଗରେ ,
ବୃହନ୍ନଳାରୂପୀ   ପାର୍ଥ ରଥୀ ଯଥା
ବିରାଟ—ପୁରେ ଦ୍ୱାପରେ ;
କେମାସଖୀ ମଣି   ବାଟ ଛାଡ଼ିଦେଲେ
ଅନ୍ତଃପୁରେ ପ୍ରତିହାରୀ ,
ବାମାରୂପୀ ନୃପ — କୁମାର ଉଲ୍ଲାସେ
ଭେଟିଲା ନୃପକୁମାରୀ ,
ଅସ୍ତ୍ର ଯାଉଥିଲେ   କପିଲାସ - ଶୃଙ୍ଗେ(୧)

---

(୧) କପିଲେଶ୍ୱର ଦୁର୍ଗର ପଶ୍ଚିମରେ ବିଗ୍ରୁ

ଏକାଳେ ଦେବ ତପନ
ବିଶ୍ୱଗଗ -ତେଜ ଭଣ୍ଡାର-ମେକାପ (୧)
ପଦ୍ମିନୀ — ମୁଦ — କରଣ , ( ୩ )
ବାରୁଣୀ - ବୃଣ୍ଠିମେ କୋଟି ହୀର୍ ମାଳଃ
ମଣି ମୁକ୍ତା ଜର୍ ସାଡୀ
ପ୍ରକୃତିକ ସ୍ତରେ ସ୍ତରେ ରଖି ଥିଲା
ଗଣନ୍ତି ଲାଗି ସଜାଡ଼ି ?
ସେଦ୍ଧ ଅଗ୍ର ପଡ ପ୍ରାସାଦର ଚୂଡ଼େ
ଦେଉଳର ଅମଳକେ,
ଝଟକୁଥିଲା ସେ ଗଜେନ୍ଦ୍ର ଝଟକ
ଶୈଳ ଉତ୍ତୁଙ୍ଗ ଝଙ୍କଙ୍କେ ,
ଦିଶୁଥିଲା ଅସ୍ତ — ଆତପ ତେଜବାରୁ
ଲୀଳଦେବେ ନପଡନ୍ତ ,
ପ୍ରତୀଚୀର ଗିର — ପ୍ରାଚୀର କୋମଳ

---

ନନ୍ଦାକୃତ କପିଳାସ ପର୍ବତଶ୍ରେଣୀ ସ୍ପଷ୍ଟ ମତ୍ ଦୃଶ୍ୟମାନ ।

( ୧ ) ଭଣ୍ଡାର ରକ୍ଷକ

( ୩ ) ଯେଉଁ କର୍ମଚାରୀ ଘର ବନ୍ଦକରି ମୋହର ଦେଇଯାଏ

ଧୂମଳ ବର୍ଣ୍ଣେ ରଞ୍ଜିତ ; ( ୪ )
ଯାଉ ଅଛୁ ଥିଲା      ଧିମେ ପୂର୍ବ ମୁଖେ
ପ୍ରସାର ବିଶୃଙ୍ଖ କାୟା
ନିଲ୍ଲି ସଙ୍ଗେ ଶତ୍      ଗ୍ରାମ୍ୟଗ୍ରାମ୍ୟ ଜ୍ୱଥ
ପ୍ରଦୋଷର ମହାଛାୟା,
ତଉଦ୍ଧଗେ ସ୍ୱର୍ଣ୍ଣ—   ବର୍ଣ୍ଣେ ବୋଲି ଥିଲା
ଅସ୍ତଗାମି——ସୂର୍ଯ୍ୟାଂଶୁକ
କାନନ-କେଦାର   ଝଙ୍କ—ନଦୀ-ସ୍ରୋତେ
ଶ୍ୟାମଳ ମେଦିନୀ— ମୁଖ ;
ଜଗତୀ ଉପରେ        ଜଗତ ମୋହିନୀ
ବସି ତେଣି ଥିଲା ବେଶ ,
ଫିଟି ଲୋଟି ଥିଲା    ଶ୍ୟାମଙ୍ଗେ ଚରଣେ
ତରଙ୍ଗ—କୁଞ୍ଚିତ କେଶ ,
କରେ ରତ୍ନ ବାହୁ — ଯୁଗେ ବାହୁବନ୍ଧ,
ଗ୍ରୀବା ଦେଶେ ଗ୍ରୈବେୟକ,
ଗୌରଗଣ୍ଡ ଚୂମ୍ବି        ହୀରା ଅବତଂସ
କରୁ ଥିଲା ଝକ ଝକ ,

---

( ୪ ) ନୀଳରକ୍ତ ମିଶ୍ରିତ ହେଲେ ଧୂମଳ ବର୍ଣ୍ଣ ହୁଏ

ଦଗୁ ଥିଲା ଶିଶୁ, — ଦରଣାଂଶୀ ରତ୍ନ—
ଭୂଷଣେ କବା ମଞ୍ଜୁଳ !
ଭୁଲ ତାର ସିନା ଦୁଅନ୍ତା ତଡତ —
ଲତାରେ ଫୁଟିଲେ ଫୁଲ !
ନତମ୍ବିନୀ — ଗୋଲ — ପୃଥୁଳ— ନତମ୍ବେ
ଶୋଭୁ ଥିଲ କାଞ୍ଚୁଦାମ ,
ସ୍ଥାନ ନାଶି ଅବା ନନ୍ଧଥିଲା ତହିଁ
କାର୍ମୁକ — ଶିଞ୍ଜିନୀ କାମ
ସରଳ ସୁଢ଼ଳ ବାଲା-ଅଙ୍ଗ ଯଷ୍ଟି
ଅବା କବା ମୃଣାଳତ ?
ହୋଇ ଥିଲା ଜସେ ଅନଙ୍ଗ-ଶିଳ୍ପୀର
ଶାଣ — ଯନ୍ତ୍ରେ ସୁଢଳିତ !
ଉଦ୍ଭାସିତ ହୋଇ ବମ୍ବାଧରୀ ଚକ୍ଷୁ-
ଅସ୍ୟ — ବମ୍ବ ଅଙ୍କରେ
ପ୍ରତେ ହେଉଥିଲା ସତେକି ମୃଗାଙ୍କ-
ମଣ୍ଡଳୁଁ ପୀୟୂଷ ଝରେ ;
ଯୁବାଜନ ମନ — ଉନ୍ମାଦକ ଗନ୍ଧ
ଲୁଚି ଥିଲା କ ବଳାସେ
ଝୁନେ, ଅବା ଛାର ସୁବାସ ଯେସନ,
ଲୁବ୍ଧବାସୀ — ଡଲସାବେ !

ଅଙ୍କେ ବସି ସଖୀ        ଗୁନ୍ଥୁଥିଲା କେଶେ
ଗନ୍ଧଦନ୍ତ — କଙ୍କତିକା ,
ମଞ୍ଜୁ ପାଦ ପଦ୍ମ        ରଞ୍ଜୁ ଥିଲା ଅଗ୍ରେ
ଲାକ୍ଷା ରସେ ପ୍ରସାଧିକା ,
ଅହା ସେ ଅବନୀ — ରମ୍ଭାର ଉଲଟ-
କନକ ରମ୍ଭା ଚରଣ !
ଯାନୁଦେଶ ଯାହାର        ଘର୍ଷି ବସ୍ତ୍ର, ଦଗ୍ଧ
ହୁଅଇ ରସିକ ମନ ,
ଉପୁଜାଏ, ଅହା,        ସଦମ୍ଭେ ଦେଖାଇ
ଯେଉଁ କନକାମ୍ଭ ଊରୁ
ଶତ ମନୋରଞ୍ଜନ        ହୃଦୟେ ମନୋଜ
ମନୋରାଜ୍ୟ—ଦୀକ୍ଷା ଗୁରୁ !
ଯୁବା-ମନୋରାଜ୍ୟ        ରୂପିଣୀ ରୂପସୀ
ବିମଳ — ହେମ — ଦର୍ପଣ
କର ପଦ୍ମେ ଧରି        ଦେଖୁ ଥିଲା କ୍ଷଣେ
କ୍ଷଣେ ପୂର୍ଣ୍ଣ ଚନ୍ଦ୍ରାନନ .
ସାଙ୍ଗ ମୁଗ୍ଧ—ଭଙ୍ଗୀ        କନ୍ଧ ଦେଉଥିଲା,
ବେଶେ ତାର ଅମ୍ଳା ନାହିଁ,
ଦେବେ ମାନ ତହିଁ        ବସି ଅଛି, ମନ
ଯାଇ ଚରୁ ଅଛି କାହିଁ ,

ବିଷାଦର ଛାୟା ବଢ଼ାଇଣ ଥିଲା
ଦ୍ୱିଗୁଣେ କାନ୍ତି ତାହାର ,
ତ ଅଶ୍ରୁର ଛାୟା ରୂପ ଶୋଭା, ଅହା,
ବିଷାଦ ଯାର ସିଙ୍ଗାର ?
ଭୁଲିଲା ତରୁଣ ତରୁଣୀର ସେହି
ଲାବଣ୍ୟ ଦେଖି ଅଦୂରୁ
ସମ୍ମୁଖିତା, ଅହା, ନବ ଉନ୍ମଦର
କନ୍ଦର୍ପ — ଦର୍ପି — ଚିହ୍ନର ?
ବହ୍ନିଶିଖା ପ୍ରାୟ ରୁଦ୍ର ସୁନ୍ଦର ଯେ
ଅନ ବେଶେ ଦିଶୁଥିଲା ,
ସ୍ପର୍ଶି କ୍ଷମ ରତ୍ନ ପ୍ରାଏ ପ୍ରଚ୍ଛାଦିତ
ଏବେ ହେଲା ସେ ସୁଶୀଳା ,
ମନୋବୃତ୍ତେ ତର — ଅଶାନ୍ତି ପୁଂସର
ଫୁଟିଲା ଅଶା — କଳିକା
ସ୍ନେହ ନିଃସ୍ୟନ୍ଦନୀ ସୁନ୍ଦରୀର ଲଭି
ବଦନ — ଚନ୍ଦ୍ର-ଚନ୍ଦ୍ରିକା ,
ପ୍ରେମ—କ୍ଷୁଧାତୁରେ ଅଦୂରୁ ତରୁଣ
ଦେଖି ସେ ନବ ଛଇଳୀ ,
ବିସ୍ଫାରିତ-ନେତ୍ରେ ଅସମ୍ଭାଳେ ତାକୁ
ପକାଇଲା କି ସେ ଗିଳି ?

ଝଙ୍କା ମଣି ଯୁବା — ମଣିଷ ଦରଶେ
ଫୁଲ୍ଲ କଲା ହେମା ମଣି ,
ଦରଦ— ନିଶାନ୍ତେ ଉଷା ଦେଖି ଯଥା
ଉତ୍ଫୁଲ୍ଲ କୋକ ରମଣୀ ,
ଅଥବା କାସାରେ କୁମୁଦିନୀ—ଚନ୍ଦ୍ର-
ଚନ୍ଦ୍ରାଂଶୁ—ଛାୟେ କାତର
ଦିନାନ୍ତେ ଯେସନ ଉଲ୍ଲାସେ ଶାରଦ-
ଜ୍ୟୋତ୍ସ୍ନା-ଯୋଗେ ବିକସ୍ୱର;
ହେମା—ସୁଖେ ସୁଖୀ ସହଚରୀ-ବୃନ୍ଦ
ବନ୍ଦିଲେ ଯୁବା—ଯତ୍ନରେ,
କର ଧରି ତାଙ୍କୁ ବସାଇଲା ହେମା
ନିଜ ପାଶେ ପ୍ରେମାଦରେ ,
ବାମା ପାଶେ ବସି ଛନ୍ଦୁବେଣୀ ଦେଲା
ଅପୂର୍ବ ସୁଖେ ଅବଶ ,
ସ୍ୱପତ୍ନୀରେ ଶଚି — ଦମ୍ଭକୁ ଛୁଇଁଲା
କିବା ତୃଷାତୁର ଶଶ ?
ଆହା, କି ସରସ ସେ ଦିବ୍ୟ ପରଶ!
ଲେଶ ମାତ୍ର ଯାର ପାଇଁ ,
ଜୀବନ୍ୟାସ ଲଭି, ଉଲ୍ଲାସେ ଉଠିବ
ଶୁଷ୍କ ତରୁ କଅଁଳାଇ ,

ସୁନ୍ଦରୀର ସେହି    ସାନ୍ଦ୍ର-ସ୍ୱର୍ଗ-ସୁଖେ
ଭୋଳ ହୋଇଗଲା ମନ ,
ସାବଧାନେ ଯୁବା    କଲା ସେ ଉଦ୍ଦାମ-
ସାତ୍ତ୍ୱିକ-ଚିତ୍ତ ଗୋପନ ,
ସଂଯମ—ଅସ୍ତ୍ରେ    ଏହିରୂପେ ରକ୍ଷି
ନିଧି ରଙ୍କ ପରିଏ
ମନେ ମନେ ଗଲା    ଚୁମ୍ବି ସେ ବାଳାକୁ
ଚକ୍ଷୁରୁ ଚରଣ ଯାଏ ;
ସମ୍ଭାଷଣ ପରେ    ଅଗନାନ୍ଧ ନୀଡ
ଏକତ୍ରେ ଦୁହେଁ ଅଚର
ଶୋଇଲେ କିଶୋରୀ    କିଶୋର ନଉଛେ
ଏକାଶେଯେ ପୂର୍ବ ପରି ,
ଦୁଃଖ—ଶେଯ ତାକୁ    ଜାଣି ଛେମା ତହୁଁ
ଆଗ୍ରହେ କଲା ଶୟନ ,
ଅନ୍ତ୍ର ଦୁଃଖ ଯନ୍ତ୍ରୁଁ    ମୁକ୍ତି ଲଭିବାକୁ
ନଲୋଡଇ ଦୁଃଖି ମନ ;
ଶେଯେଶୋଇ କହେ    ଲଳିତା "ସଜନ,
ମେଲାଣି ଦେବା ସମୟେ
ଏତେ ବେଗେପୁଣି    ଦେଖା ଦେବ ଆସି,
ନଥିଲା ଅଶା ହୃଦୟେ ,

ଶୁଝି ନ ପାରିବ    ତୁମ୍ଭ ସ୍ନେହ—ଋଣ,
    ଦେଲି ପାଦେ ଛଉରଣୀ ,
ଏ ସୁଦୟା ରହୁ    ହୃଦୟ—କମଳେ,
    ଏତିକି ମୋର ମାଗୁଣି ”
ବୋଲେ ବାମା-ରୂପା    “କଲଗି ଅଉଲ
    କହିବ ସେହି ଚରିତ ,
ସମ୍ଭବ ଥିଲେହେଁ    ଅନ୍ୟଯୁଗେ ତାହା
    କଳିକାଳେ ଅଲୌକିକ ,
ଯେଦନେ ନୟନେ    ଅଙ୍ଗଶୋଭା ତୋର
    ଦେଖିଲି ନୟନ ଭରି ,
ପାଞ୍ଚିଲି ଗଢ଼ିଲେ    ନାହିଁ କିପାଁ ମୋତେ
    ବିରଞ୍ଚି ପୁରୁଷ କରି ,
ପୁଂସ ହୋଇ ଥିଲେ,    ପୁରଟେ ଯେସନ
    ଜଡ଼ି ରହି ଥାଇ ମଣି ;
ଶ୍ରୀଅଙ୍ଗେ ତୋହର    ଅଙ୍ଗକୁ ମିଶାଇ
    ରହି ଥାନ୍ତି କେମାମଣି !
ପୁଂସ ହୋଇଥିଲେ    ହୋଇଥାନ୍ତି ସିନା
    ସେବାରେ ତୋର ଲାଗୁଣ,
ଗୃହିଣୀ—କିଙ୍କର    ପାଦେ ହୋଇ ତୋର
    ଶୁଝିବ ମଣନ୍ତୁ ଋଣ ,

ଗ ପୁଷ୍ପ ପ୍ରାଏ ଏ ବାସନାକୁ ଜାଣି
ଖେଦ ମାରୁଥିଲ ମନେ ,
ମାନ ଧାରଣେଲ ପୁଣି ସଙ୍ଗେ ତୋର
ଏକଜେ ଶୋଇ ଶଯ୍ୟନେ ,
ଲୁଟେ କଣ୍ଠା ପ୍ରାଏ ଏ ଜଘନ୍ ତୋର
ଦେଖି ହେଲା ବଡ଼ ଶୋକ,
ପୃଷ୍ଠ—ଇନ୍ଦୁ ବିମ୍ବ ଦେଖି ମନୋଦୁଃଖେ
ଦୂର ହୋଏ ସିନା ଜୋକ ।
ଭାଳଲ "ହୃଧିକ ଗୁଡ଼ ଦେଲ ମୃଗ ,
ଭୁଣ୍ଡେ ବକ୍ର—ଭୁଣ୍ଡିଦେଇ ,
ଶୈଳ ଦଣ୍ଡ-ହ୍ୱର — ଶୋଭ ଶୋଭାବନ
ତା ଚକ୍ଷୁ ଅଗ୍ରେ ଛ ଫେଇ ,
ଧିକ ସେ ବିଧିଙ୍କ ! ଅଗୁଁ ଯେବେ ମୋତେ
ଅବଳା କର ଗଢ଼ିଲ ,
ଅକାରଣେ କପାଁ ତୋପର୍ ରୂପସୀ-
ପାଶେ ଅଣି ଭେଟାଇଲ ?
ନାରୀ ପୁଷ୍ପେ ନାରୀ ପୁଷ୍ପର ଯୋଜନା
ନିଷ୍ଫଳ ସିନା କେବଳ !
ସେ ଧୂସ୍ତରୁ ପୁଷ୍ପ — ଝରଜନେ ଏକା

ଗୁଞ୍ଜନ ଧ୍ୱଂସ-ଭ୍ରମର, (୧)
ଧ୍ୱଂସ-ଅଳ ଯୋଗେ    ପୁଷ୍ପ-ସୁକୁମାରୀ
କୁମାରୀ ହୁଏ ପ୍ରସୂତି,
ଏ ବିଧିରେ ବିଧି    କରୁଅଛି ଭବେ
ନୂତନ ଶୋଭା — ସମ୍ଭୂତି,
ଏ ବିଧି ବିଧିର    ଆନ ହେବ ନାହିଁ,
ଯେଣୁସେ ସ୍ୱବିଧି—ବଶ,
ମୋତେ ହେତୁବର୍ଣ୍ଣା    କରଇ ଏରୂପେ
ଅରଜଲି କେଉଁ ଯଶ ?
ଖିନ୍ନ-ମନେ ଶେଯ    ତ୍ୟେଜ ଜୃମ୍ଭାକାଳେ
ତୋଠାରୁ ନେଲି ବିଦାୟ,
ବଳି ଦୃଢ଼ପଣ    ପୁରୁଷ ହେବାର
ଲୋଡ଼ିବି ଥିଲେ ଉପାୟ,
ଶୁଣିଥିଲି ପୂର୍ବେ    ଶିଖଣ୍ଡିନୀ ବାଳା (୬)

---

(୧) ଭ୍ରମର ଓ ମଧୁମକ୍ଷିକାର ସଂଯୋଗରେ ପୁଷ୍ପର ଗର୍ଭଧାରଣ ବିଜ୍ଞାନ ସମ୍ମତ ଅଟେ ।

(୬) ଶିଖଣ୍ଡିଣୀ ପ୍ରଥମେ ସ୍ତ୍ରୀ ଥିଲା ଭୀଷ୍ମଙ୍କୁ ସଂହାର କରିବା ପାଇଁ ତପସ୍ୟା କରି ପୁରୁଷ ହେବାର କଥା: ମହାଭାରତରେ ଦେଖ ।

ପଶିଲ ମଣ୍ଡପମଣ୍ଡଳେ ;
ଦେବ ବ୍ରତେ ଧ୍ୱଂସା ବନ୍ଧ ହୋଇଥିଲା
ପୁଂସ ଉଗ୍ର ତପ ଫଳେ ,
ଭୁଲିଲ ସମ୍ପୃକ ନୋହିବ କି ପ୍ରେମେ?
ସଂସୃତ ଥିଲ ଯା ଦ୍ୱେଷେ ?
ସେହି ତପ ଶିକ୍ଷା ଲାଗି ମୁଁ ଖୋଜିବ
ଦୀକ୍ଷାଗୁରୁ ଦେଶେ ଦେଶେ ,
ଭେଟିଲେ କାନନ ପଥେ ପଥେ ଯାଇ
ସେ ଉଦସ୍ତୃ ସାନୁମାନ
ତୋ ଗହଣେ ଅସୁଁ — ଅସୁଁ ତଟେ ଯାର
କର ଥିଲି ଅଧ ସ୍ନାନ ,
ପୁଂସ-ବେଶେ ସେହି ଶୈଳେ ଭ୍ରମୁ ଭ୍ରମୁ
ଦେଖିଲ ଦିବ୍ୟ ଆଶ୍ରମ ,
ଅକାଳ-କୁସୁମ ଫଳେ ଯହିଁ ତରୁ-
ଲତା ଗୁଳ୍ମ ମନୋରମ ,
ଆବର ଦେଖିଲ ଶୋଇଅଛି ଅହି
ନୀଳକଣ୍ଠ-ପୁଚ୍ଛ ତଳେ ,
କୁରଙ୍ଗ-ଶିଶୁଙ୍କୁ ପିଅଉଛି ସ୍ତନ୍ୟ
ଶାର୍ଦ୍ଦୂଳୀ ସ୍ନେହ-ବତ୍ସଳେ,
ଅଶ୍ରମର ମଧ୍ୟ— ସ୍ଥଳେ ଦିବ୍ୟ ସର

ମୁକୁର ପ୍ରାଏ ନିର୍ମ୍ମଳ ,
ସମସ୍ତ ଆଶ୍ରମ   ଛୁଇ ହୃଦେ ବହି
ଜଳ କରେ ଢ଼ଳ ଢଳ ।
ତା ତୀରେ ଦେଖିଲେ   ମହା ତେଜଃପୁଞ୍ଜ
ତପୋଧନ ଧ୍ୟାନେ ରତ ,
ନଭ୍ରତେ ନିଶ୍ଚଳେ   ଆସୀନ, ନିବାତେ
ନିଷ୍କମ୍ପ-ପ୍ରଦୀପ ବତ ।
କେ ଜାଣି ସେ ଯତି   ସମାଧି ଆସନେ
ଥିଲେ ରହିଁ କେତେ କାଳ ?
ମାଏ ତାଙ୍କ ଦେହେ   ଉର୍ଣ୍ଣିନାଭ ଠାବେ-
-ଠାବେ ବୁଣିଥିଲି ଜାଲ ।
ସମାଧି ସରିଲେ   ଦୁଃଖ ଜଣାଇବ
ଏହି ଆଶା ବହି ମନେ ,
ଜୀବନେ ମମତା   ତେଜି , ପଦ୍ଧାପଡ଼
ରହିଲା ତାଙ୍କ ଚରଣେ ।
ଯଥାକାଳେ ଯୋଗ-   ସମାଧି ଅତର
ଉଠିଲେ ସେ ମହାଜ୍ଞାନୀ ,
" ଉଠ ବତ୍ସ " ବୋଲି   ଶ୍ରୀମୁଖୁଁ ତାଙ୍କର-
ନିଃସରିଲା ଆଶାବାଣୀ ।
" ତ୍ରିମାଗୁଣି ତୋର"   ଏହି ପ୍ରଶ୍ନେ ଜର-

ଯୋଗୀ ବୋଇଲେ ବଚନ ,
“ କିଛି ମାଗୁନାହିଁ, ମାତ୍ର ପୂର୍ଣ୍ଣ ହେଉ —
ତୁମ୍ଭ ଶ୍ରୀମୁଖ ବଚନ ।
ନାରୀ ଅଟଇଁ ମୁଁ, ନୁହଇ ପୁରୁଷ,
ନାରୀ ଜନ୍ମ କରି ପାର ,
ଶ୍ରୀମୁଖ ନିଃସୃତ- ବାଣୀ ହଉ ହେତୁ
ଏତିକ ମୋର ଗୁହାରି ; ”
ମୋ ଆରତ ଦେଖି କୃପା-ଅକୁପାର
କୃପା କଲେ ତପୋଧନ ,
ଆଦେଶିଲେ ମୋତେ ପଶିବାକୁ ସେହି
ସରସୀ ନୀରେ ମଜ୍ଜନ ।
ସରସୀରେ ମଜ୍ଜି ଉଠିଲି କ୍ଷଣି ମୁଁ
ଦେଖିଲି ହୋଇ ବିସ୍ମିତ ,
ସେ ଆଶ୍ରମ ସଙ୍ଗେ ତପୋଧନ ତହୁଁ
ହୋଇଛନ୍ତି ଅନ୍ତର୍ହିତ ।
ମାତ୍ର ସେହିକ୍ଷଣେ ସଞ୍ଚରିଲା ମୋର
ଶରୀରେ ଅପୂର୍ବ ବଳ ,
ଦୂର୍ବ ବନ୍ଧୁରତା ଛେକି ହୋଇଗଲା
ସମତଳ ବକ୍ଷସ୍ଥଳ ।
କଣ୍ଠାକ୍ରିତ ହେଲା ଚିବୁକ, ଚରଣ

ଚେତନା ମନ୍ଦର-ଗଡ଼ ,
ଦକ୍ଷିଣ ପଶ୍ଚିମ ପ୍ରସାର ତୀରେ ମୁଁ
ଉଠିଲି ଯାଇ ଶତଗଡ଼ ।
ହୃଦେଶେ ସାକ୍ଷାତେ ପ୍ରଣମି ମୁନଙ୍କି
ସେ ଶୈଳୁଁ ଚଳେ ଓହ୍ଲାଇ ,
ପୂର୍ବ ନାରୀବେଶ ଧରନ୍ତୁଁ ଅସିଲି
ଏକାରତା ଦେବାପାଇଁ ।
ଭୋକ୍ତାର ସଂସ୍କର ଦେବା ଅଧରେ ମୁଁ
ଅଣିଲ ପୁଂସ-ବିଗ୍ରହ ,
ପୁଂସ ଦେହ ବୋଲି ମାଗୁଛୁ ପସ୍ତରେ
ଉଣା ନୋହୁ ଅନୁଗ୍ରହ ।
ଏହା ବୋଲି ହୃଦୁଁ କାଢ଼ିଲ ଫିଟାଇ
ଦେଖାଇଲା ବକ୍ଷସ୍ଥଳ ,
ପଢ଼ାଇଲା ଇନ୍ଦ୍ର- ନୀଳ ମଣି ଚୂଡ଼
ପ୍ରକୋଷ୍ଠୁଁ କାଢ଼ିରଖିଲ ।
ସାଢ଼ି କାଢ଼ିବାରୁ ଆଉ କର ମୁଖ
ଦେଖିଲ ଚନ୍ଦ୍ରବଦନୀ ,
ପିନ୍ଧିଛୁ ସେ ସାଢ଼ି - ଭଳେ ପୁରୁଷର
ପରିଚ୍ଛଦ ଯୁବାମଣି !
ବସ୍ତ୍ର, ଧରଷ ଏକ ପରେ ଏକ

ରାଜସୁତା ହୃଦେ ଅସି ,
ହେଲେ ପ୍ରଭୁ ପଣ, ଅବଶେଷେ ତାଙ୍କୁ
ଲଜ୍ଜା ପକାଇଲା ଗ୍ରାସି !
ଲଜ୍ଜାବଶେ ବାଳା ଶଯ୍ୟାରୁ ଓହ୍ଲାଇ
ଛଳେ ଯାଇ ଦେଲା ଡିଅ ,
ସଙ୍ଗେ ସଙ୍ଗେ ତଳେ ଓହ୍ଲାଇ ତାଙ୍କର-
ପଲ୍ଲବ ଧଇଲା ଯୁବା ।
ଚାତୁରିରେ ବାଳା ମଣିଷ ମନାଇ
ଅଣିଲା ଖଟକୁ ପୁଣି ,
ମନ୍ଦବାତେ ପଦ୍ମ- ଲତା ପ୍ରାନ୍ତେ ଥରେ
ତଥାପି ଲାଜେ ତରୁଣୀ ।
ଅଶ୍ୱାସନା ଦେଇ ପ୍ରଗଳ୍ଭ ରସିକ-
ବର ପ୍ରେମ--ଉତ୍ତରଳେ ,
କମଳ-କୋରକ- ସ୍ତନା ନୂତନାକୁ
କୋଳେ ବସାଇଲା ବଳେ ।
ପ୍ରେମ ଲଜ୍ଜା ମଧ୍ୟେ ବଳ ହୋଉଣି
ଲାଗି ପ୍ରେମଶିଳା ମନେ ,
ହାର ପଳାଇଲା ଲଜ୍ଜା ଲାଜ ପାଇ
ଜିଣିଲା ପ୍ରେମ ଏ ରଣେ ।
ସ୍ନିଗ୍ଧ ଜ୍ୟୋତ୍ସ୍ନା ଦେଖି ସୁନ୍ଦରୀ ବଦନେ

ଯୁବକ ଢୋଲ ଉତ୍ସବ ,
ଜାଣିଲି ଭାବପ୍ରେମ    ଯାଉଛି ନେବାକୁ
ଆସିଲାଣି ଅଟ୍ଟେ ପଥ ,
ହସ୍ତ ବନାଦେବ    ସମ୍ଭୋଗ କେମନେ?
ଏତିକି ମାତର ବାଧା ,
ମାନ କିଏ କେବେ    ଏଭଳି ସୁଯୋଗେ
ରଖଇ ଶାସ୍ତ୍ର ମର୍ଯ୍ୟାଦା ?
ମନୋହାରୀ ବନ୍ୟା    ମାନଇ କି କେବେ
ମୃଣାଳ—ତନ୍ତୁ ଅର୍ଗଳା ?
ଝାଉଁଦଳେ ଢେଉ    ସମ୍ଭାଳି ହୁଏକି
ମହାବେଗା ତରଙ୍ଗମାଳା ?
ହିଂସ୍ରଗି---ଲାଳସା    ଦେବନଏ, ଦୋଉଛି
ଦେବତାଙ୍କ ଭେଟ ନଜ୍ଜିନେ ,
ଚିନ୍ତିର କରଇ    ନେତ୍ରଙ୍କର ତନୁ
ଅତନୁ ଧୃଷ୍ଟ ମର୍ଦ୍ଦନେ ,
ସ୍ବରୂପ, ଯୌବନ,    ପ୍ରେମ, ଏତିକିହେଁ
ବିବେକ—ବୈରୀ ହଁବଥା ,
ତିନିହେଁ ମିଳିଲେ    ବିବେକର ଦେହ
ମୋଡ଼ିଦେବା ହବା କଥା ?
ତଥାପି ବିବେକ —    ସୁଖକୁ ଅନାଇ

କି ପୁରୁଷ, କିବା ରମା
ଅନେକ ସନ୍ଧ୍ୟାରେ        ଗାନ୍ଧର୍ବ-ବିଧାନେ
କରିନେଲେ ଉପାସନା ,
ମସନ୍ଦର ଛାୟା — ମଣ୍ଡପ, ରତନ-
ପଲଙ୍କ ହେଲା ବେଦିକା ,
ନାୟକ ନାୟିକା — ଭକ୍ତ ଯୁଗ୍ମ ହେଲେ
ଚରଣ—ପୁଷ୍ପ-ମାଳିକା ,
କନ୍ୟାକର୍ତ୍ତା ହେଲ        କନ୍ୟା ଏ ବିବାହେ,
ବରକର୍ତ୍ତା ହେଲା ବର ,
ପୁରୋଧା!--ଅଭାବେ        ଚନ୍ଦ୍ର ଭଲ ଅସି
ଥାନ୍ତି ଶୁଣି ପୁଷ୍ପଶର ;
ମିଳନର ଆଗେ        ଯେଉଁ ହୋଇଥିଲା
ଦେବାଙ୍କର ପତ୍ର—ପତ୍ରି ,
ପୁରୋହିତ ହୋଇ        ସେହି ହର୍ଷେ ଏବେ
ପଢ଼ାଇଲା ହସ୍ତଗ୍ରନ୍ଥି ,
ନାରାୟଣି ଦେଲା        ନଥ୍ନୀ, କାଦାଙ୍କାର
କଙ୍କଣ ପୁଣି କିଙ୍କିଣୀ ,
ଉହ୍ୟରୂପେ ବିଦେ        ହେଲେ ଏ ଉତ୍ସବେ
ନିଜେ କାମ——ସାମନ୍ତିନୀ ।
ତପ୍ରଥାର ଯଥା        ଲୋହିକୁ ଯୋଡ଼ଇ

ଅମୋଘରେ ନୋହିବାର
ପ୍ରହାର ବିଶିଖେ   ଜଡ଼ିବା ରସିକେ
ଯୋଖିଲା ଯେସନେ ଶର ।

---

## ପଞ୍ଚମ ସର୍ଗ ।

ରସିକ ରସିକା   ପରସ୍ପରେ ମିଳି
ଏହିରୂପେ ସଂଗୋପନେ
ପ୍ରେମସ୍ରୋତେ ରତ   ହୋଇ କଟାଇଲେ
ଦିନ ଅତି ହୃଷ୍ଟମନେ ,
ରସିକ—ଶେଖର   ଭ୍ରମର, ଭ୍ରମରୀ
ରସିକା—ଦମୟନ୍ତୀ ,
ଲଭିଲେ ଅଶେଷ   ରତନ ସୁଖାଗେ
ଭାବ ସାଗରକୁ ମନ୍ଥି ,
ତ୍ରିଜଗଶୋଭାର   ଚଉ ଭୋଷୁଥିଲେ
ନାଭିରେ ଗ୍ରନ୍ଥ କଶୋର
ହଂସ ମନୋରମା — ଉତ୍କଳେଶ-ହେମା
—ଶ୍ରୀମୁଖ—ଚନ୍ଦ୍ର ଚକୋର,
ଲଲିତ—କନକ   କଳିତ—କେତକୀ-
—ଷଡ଼ଉଦୀକ ପ୍ରବାମଣି
ସୁବାଗ—ରଭଙ୍ଗ   ମଣ୍ଡୁଥାଇ ପ୍ରେମ—

ପୟୋଧି ହେମ—ତରଣୀ,
ପ୍ରେମ ସ୍ରଷ୍ଟାଠାରୁ ପ୍ରେମଛନ୍ଦ ଶିଖି,
ଯେ ଛନ୍ଦେ ହୋଇ ପ୍ରକାଶ,
ଯୁବତୀ—ମୂରତି ଦେଉଥିଲା ଧନୀ
ଗୁରୁଙ୍କୁ ଗୁରୁଦକ୍ଷିଣା,
ଦିବା ଯେ ସେ ଯୁବା—ଠାରୁ ମଞ୍ଜୁ କେଶୀ
ହେଉଥିଲେ ଅସଂଯତା,
ଜାଣ ଯେ ସେ ବେନ—ତନୁ ମଧ୍ୟେ ଗଳୁ
ନଥିଲା ମୃଣାଳ—ସୂତା ;
ହୃଦୟରୁ ଦେବେ ନ ମିଶାଇ ଦେବାକୁ
ସୌରଭ କୁସୁମ—ଧନୁ
ସେହିଁ ଦେଉଥିଲା ସୂକ୍ଷ୍ମ—ପୁଷ୍ପଶର-
ସୃଷ୍ଟିରେ ଏ ବେନି ତନୁ ?
ଅସଂଯୋଗେ ହେବେ ବେନଠାରୁ ବେନ
ଛିନ୍ନ ହେଲେ ଏକାଦଣ୍ଡ,
ଲଭୁଥିଲେ ଏକ ଅନ୍ୟଙ୍କରୁ ସୁଧା-
ସୋଦର ସୁହାଗ—ଦଣ୍ଡ,
ଉତ୍ତର ପାଇଁଲେ ଏକର, ଅନ୍ୟର
ଜାଗିବାସେ ଥିଲେ କଣ୍ଠ,
ଶତ ପ୍ରାନ୍ତସ୍ଥିତ . ଜଳେ ହେଉଥିଲା

ଦେଖନ୍ତୁ ତାହା ନାଥଙ୍କ !
ଉଠୁଥିଲା ଯେବେ   ଯେବଣ ଲଲିତ—
ସ୍ପୃହା ଜଣକର ମନେ ,
ଦର୍ପଣ ପର୍ଏ   ପ୍ରତିବିମ୍ବ ଥିଲା
ଅନମନେ ତତକ୍ଷଣେ ,
ବେନଙ୍କ ବଦନ   ବେନଙ୍କେ ନୈନଙ୍କ
ପ୍ରେମର ହେମ ଦର୍ପଣ ?
କେମନ୍ତି ଦେଖିବା   ଲାଗିକି ବେନଏ
ବହୁଣ୍ଣ ଥିଲେ ଈଷଣ ?
ପଲକ — ଜନିତ   ଦୃଷ୍ଟିବାଧା ହେଲା
ସମୁଦ୍ର ପ୍ରାଏ ପ୍ରତେ !
ପୁଲକ — ଅନ୍ତର   ପରସ୍ପରେ ପୁଣି
ଯୋଜନ ବେନଙ୍କ ମଝେ ,
ନାରୀକ ହୃଦୟେ   ରଖିଲେ ପ୍ରେମିକ—
ଶେଖର କମଳାବର ;
ନାରୀ ପ୍ରେମେ ଦେବ   ଅର୍ଦ୍ଧେନ୍ଦୁ ମଣ୍ଡଳ
ହେଲେ ଅର୍ଦ୍ଧନାରୀ ଶ୍ୱର ,
ନାହିଁ ଏ ଯୁବକ — ଯୁବତୀର ପ୍ରୀତି
ସେ ପ୍ରୀତିକି ଢଳିଗଲା !
ପ୍ରେମ ଏକାକାର   ହୋଇଗଲେ ବଢେ

ମଦୋଦଧି ତିରୋହିଲ !
ପ୍ରେମ-ରସାୟନ—ଯୋଗେ କେମନ୍ତେ ହୋଇ
ପୂର୍ବ—ରୂପ—ପରିବର୍ତ୍ତିତ
ହେଲେ ଅନା ସୂର୍ଯ୍ୟା — ଦଶରଥା ସର୍ବେ
ଶୃଙ୍ଗାରେ ଅବତାରିତ ?
ପରସ୍ପରେ ବନ୍ଧୁ — ବିଲୋଚନ—ଗେହ୍ର
ସେ ସୁନ୍ଦରୀ, ସେ ସୁନ୍ଦର
ହୋଇଥିଲେ ସବୁ—ମତେ ଯେହ୍ନା ଯୋଗ୍ୟ
ସହଚରୀ , ସହଚର ,
ଲାହଲେଷ—ନେମା ରତି ସ୍ୱରୂପିଣୀ,
ଯୁବାମଣି ରତିନାଥ ,
ପ୍ରଫୁଲ୍ଲ ପଦ୍ମିନୀ ନେମା ଯୁବାମଣି
ପଦ୍ମିନୀ ପ୍ରାଣ ସଂଗାଥ ,
ବାସନ୍ତୀ ଲତିକା ସେ ନବ—ମାଳିକା,
ଯୁବାକାନ୍ତ—ସହକାର ,
ପ୍ରେମ ତରଙ୍ଗିଣୀ ସେନବ—ରଙ୍ଗିଣୀ,
ଯୁବାପ୍ରେମ—ପାରାବାର ,
ଯୌବନ—କାନନେ ପୁଷ୍ପଲକ୍ଷ୍ମୀ ନେମା,
ଯୁବାମଣି—ଚିତ୍ରଭୃଙ୍ଗ ,
ଚନ୍ଦ୍ରମା ରୂପିଣୀ ସେଚନ୍ଦ୍ର ବଦନୀ,

ଚନ୍ଦ୍ରସୁବା—ଶିର ତାଜ ,
ଚମ୍ପଳା—ରୂପିଣୀ ପ୍ରେମାକାଶେ ଜେମା,
ଯୁବା ନବ ଜଳଧର ,
କୁସୁମ ମଞ୍ଜରୀ ପ୍ରେମ—କୁଞ୍ଜେଜେମା,
ଯୁବା ମତ୍ତ—ମଧୁକର ,
ଶୋଭା ସ୍ୱର୍ଗୀୟସ୍ପୃହା ସ୍ୱଣୀର ଉଥଲେ
ଏ ମିଳନ ଅଭିରାମ
ବନ୍ଧୁ—ଶିଳ୍ପ—ଶିଳ୍ପି ଢାଳିଦିଲା, ସୃଷ୍ଟି—
କାମ୍ୟ କି ଦେଲା ସକାମ ;
ଯୁବତୀ—ଜୀବନ ସ୍ୱର୍ଣ୍ଣ ସିଂହାସନ,
ମୂର୍ତ୍ତି—କୁମ୍ଭ ସ୍ତନଯୁଗ—
ଯେତେ ପ୍ରେମ ସାନ୍ନିଧ୍ୟ ଯୁବା ଅଭିଷେକ
ଉଅଇଲା ସ୍ପୃଷ୍ଟାଗ୍ରୁଗ ,
ନାରୀ ଅଟେ ନାଶ—ଯେତେ ଦେହ ସୁଖେ
ମଜ୍ଜିଲେ ନାରୀ ପୁରୁଷ ,
ରହିଲ ଯେ, ତାଙ୍କୁ ଜଣା ସିନା ଦେହ-
ସୁଖରେ ଲୁଣା ପୀୟୁଷ !
ଜଳରୂପେ ଗୁପ୍ତ — ପ୍ରୀତିରୁ ଯେମନ୍ତ
ପିଅନ୍ତି ହଂସ ନାଗରୀ
ରସିକଙ୍କ ମତେ ସୁନାଗାର—କ୍ଷୀର

ସେ ସ୍ଥଳକୁ ନୋହେ ସରି !
କେଳିଶ୍ରୀ ଭାଗ — ପୁଞ୍ଜ ନଭ ସ୍ଥଳେ,
ପୁଷ୍ପଗନ୍ଧି ଉପବନେ ,
ଦେବଙ୍କ ପ୍ରଣୟ — ସାକ୍ଷୀ ହେଉଥିଲେ
ହର୍ମ୍ମ୍ୟ—ପୃଷ୍ଠେ ନଭାଙ୍ଗନେ ,
ନବ ଦମ୍ପତୀକ, ଅମ୍ବର ଚକୋର-
ଚକୋର—ପ୍ରାଣ କାନ୍ତାର
ହେଉଥିଲେ ଇନ୍ଦୁ — ଚିରପ୍ରେମ—ବନ୍ଧୁ
ଶୃଙ୍ଗାର—ସୁଧା—ଭଣ୍ଡାର,
କେତେ ଛନ୍ଦାଛନ୍ଦ, ଗଳା ଗୁନ୍ଥାଗୁନ୍ଥି,
କେତେ ଗେଲ, ଖେଳାଖେଳି
କହୁଥିଲେ ଦେବ ଦମ୍ପତେ ତୋଷି କି
ଧାମ କୁଞ୍ଜ ଏଣ ଏଣୀ ?
କି ଅନ୍ତଃପୁରରୁଁ ଥିଲେ ସେ ରସିକ
ରସିକା ସୁଖ ଗଭରେ
ହଂସ ହଂସୀ ରୂପେ, ପ୍ରେମ ସୁଧା ପୂର୍ଣ୍ଣ
ମାନସିକ—ପଦ୍ମାକରେ ?
ଏକାକୁ ଅଭେଦ ଅଶ୍ଳେଷ—ପଞ୍ଜରେ
ତନୁଥିଲା ସଦା କାମ ,
ନିଦ୍ରାକାଳେ ସୁଦ୍ଧା ସ୍ୱପ୍ନ—ବଶେ ତାଙ୍କ

ନଥିଲା ରସେ ବିଭ୍ରମ ,
ଶୀତ୍କାର ହୋଇ      ମନ୍ଦାନିଳ ମହା-
ନଦୀ ନୀର—କଣବାହୀ
ସ୍ୱେଦ—ବିନ୍ଦୁ ମୋଛି      ନେଉଥିଲା ଝଳ-
କୁନ୍ତଳା ଗଣ୍ଡୁ ଚେତ୍ରି ,
ଶେଯ ତ୍ୟାଗ ଆଗେ      ମଣୁଥାନ୍ତି ନବ-
ତରୁଣୀ ନବ ତରୁଣ
ଏକ ଅପରେକର      ମୁଖ ବିଲୋକନ
ପ୍ରତ୍ୟୂଷେ ଶୁଭ ଲକ୍ଷଣ ,
ମନମୈତ୍ର ସଙ୍ଗେ      ମୈତ୍ର-ସୁଖ-ଭୋଗେ
ଯାପି ନିଶା ସୁକୁମାରୀ
ଦେଖେ ରଥାଙ୍ଗ ୨      ଦମ୍ପତିର ସଙ୍ଗ
ଦେଖି ହେଉଥାଉ ଘାର,
ସଙ୍ଗେ ଥାଇ ସୁଦ୍ଧା      ବକ୍ଷେବେ ବେନିଏ
ବିଚ୍ଛିନ୍ନ ହୋଇ ସନ୍ତତ
ଦିନେ ମଣୁ ଥାନ୍ତି      ନଳକୁ ଯାମିନୀ-
କୋକ କୋକ-ଛାୟା'ବତ,
ପ୍ରେମ-ସୁଖ-ଭୋଗେ      ପଦେ ମଦେ-ବାଧା
ଲଭିସେ ଜନ ସମୀପେ
କଳ୍ପନା—ଡେଣାରେ      ଉଡି ଯାଉଥାନ୍ତି

ସୁଖର କଲ୍ଲୋଳ ଦ୍ୱୀପେ ;
ଯାପୁଥିଲେ ଦିନ ସଖୀଙ୍କର ମେଳେ
କେବେ ଏ ନାନା ବିନୋଦେ
ଚିତ୍ରକର୍ମେ, ବୀଣା — ବାଦନେ, ସଙ୍ଗୀତେ,
ନୃତ୍ୟରେ, ଅବା କାବ୍ୟାମୋଦେ
ଭାବର ଅବ୍ୟକ୍ତ — ତରଙ୍ଗାଢ଼୍ୟ ଦିନେ
ହୃଦୟେ କରି ସଂସ୍ପୃଷ୍ଟ
ପ୍ରେମାମୋଦେ କେବେ କରୁଥାନ୍ତି ତାହା
କଣ୍ଠ ଯୋଗେ ଅଭିନୟ,
କି ଉଲ୍ଲାସେ କେବେ କରୁଥାନ୍ତି ଦିବା-
ଉପାସେ ଅଧୀର ମନା
ଦିବା ଉପବାସେ କି ଦ୍ୱିଗୁଣ ମଧୁର
ନଗାରି ପ୍ରେମ ପାରଣା ?
କେତେ ଅଙ୍ଗଭଙ୍ଗୀ ଶିଖାଉଣ ଥାଇ
ନାଟ୍ୟଗୁରୁ ପୁଷ୍ପବାଣ
କେଉଁ ଛନ୍ଦେ, ନୂଆ ଗୀତକୁ ଯେମନ୍ତ
ଗ୍ରନ୍ଥ ଧର ଅବଧାନ,
ମନୋବୃତ୍ତ୍ୟ ଶିକ୍ଷା — ଫଳେ ସେ ଲଳନା
କେତେ ଛଳ ପ୍ରକୃତୀର
ନେଉ ଥାଇ ତାନା ରଙ୍ଗେ ସେ ମଗନା—

ନାଗର — ମନ ରସାଇ ,
ଅଳୀକ ଭାଜର — ପଣକୁ ଦେଖାଇ
କେବେ କର — ପଦ୍ମ ଯୋଡେ,
କେବେ ଅବା ମୌନ ହୋଇ ଅଭିମାନେ
କନକ — ବଦନ ମୋଡେ,
ତର୍ଜ୍ଜନୀ ସହିତେ ବାଲସୁଣ ଥାଇ
ସ୍ମିତ ପ୍ରଭା ଢାଳ ମୁଖେ ,
ଲାଜ ସଙ୍ଗେ ପୁଣି ଲଳିତ ଧୃଷ୍ଟତା,
ଶିଖିଲ୍ଲ ବେଦନ ସୁଖେ ,
ହାବଭାବ ବଶେ ଥରେ ଥରେ ଥରୁ
ଝୁଲୁଥାଇ ବାଳା ଅଙ୍ଗ ,
ଉତ୍ତରଳ — ସିନ୍ଧୁ — ବକ୍ଷେ, ଅହା, କେସେ
ଶାରଦ-ଚନ୍ଦ୍ରିକା — ରଙ୍ଗ ? (୧)
ଅଳୀକ-କୋପରେ ଉଠୁଥାଇ କେବେ
ପାଣ୍ଡିନ୍ଦୁ — ଗଣ୍ଡେ ଭ୍ରୂଭଙ୍ଗୀ,
କେତେବେଳେ ଅବା ଯାଉଥାଇ ଲଙ୍ଘ-
ପାଦର ଗର୍ବେ ଉଚ୍ଛୁଟି ;
ଅଣି · ଠମ୍ଭରେ ହେଉଥାନ୍ତି , ବେଲେ
ଅନଙ୍ଗ ସଙ୍ଗୀଙ୍କ ପାଶେ .

---

(୧) ରଙ୍ଗ — ନର୍ତ୍ତନ ।

ଭୃଙ୍ଗ—ସୁମନ୍ତ୍ରିତ — ଅପେକ୍ଷିତ ସୁଖ-
ଆଶାର ମାତ୍ର ଉଲ୍ଲସେ ,
ଦେବଙ୍କ ହୃଦୟେ କରୁଥାଇ କେତେ
ବିଳାସ ଲାଳସା ଜାତ
ଦେବଙ୍କ ଉପରେ ଦେବାଙ୍ଗର ସ୍ମିତ-
ମଧୁର—କଟାକ୍ଷ—ପାତ ?
ପ୍ରେମ—କୂଟ—ଭାଷା ବୁଝିନେଉ ଥାନ୍ତୁ
ଦେବ ଦେବାଙ୍କ ନୟନୁ ,
ବୁଝିବାର ତହୁଁ ଷ କଠିନ, ଯହିଁ
ଭାଷାନ୍ତର ପୁଷ୍ପୀୟନୁ ?
ଅସ୍ତଭଙ୍ଗି କେବେ ଦେଖିଲେ ସିକ୍ଷାଣୀ
କାନ୍ତଙ୍କୁ ଘୂର୍ଣ୍ଣି ତରଙ୍ଗ
ଦେଉଥାଉ ତାଙ୍କୁ କ୍ଷଣେ କ୍ଷଣେ କରେ
ସ୍ମୃତି ଲୀଳା—ଶତଦଳ ;
କେବେ ଅବା କାନ୍ତ ଚୁମ୍ବନ—ଲାଳସେ
ରଦଚ୍ଛଦର ବ୍ୟାକୁଳର
କାନ୍ତା—କଣ୍ଠେ କବେ କଥା, ପୁଷ୍ପ କଣ୍ଠେ
ମଲୟାନିଳ ଯେପର,
ନେତ୍ର—ସ୍ୱପ୍ନ ପ୍ରାଏ ସୁପ୍ତଶ୍ରୀର—ସ୍ନେହ
ବଡ଼ ଦେହଙ୍କର ଚିଗ ,

ଏହନ୍ତି କ୍ଷଣେ  ଅନେକ ହୃଦୟର
 ସମକାଳେ ଦୋଳଉଛ ,
ନୟନ ଇଙ୍ଗିତେ  ଦୃଶ୍ୟତେ କାନ୍ତ କାନ୍ତି
 ଚୁମ୍ବନାଦ କରିମୂଳ ,
ସାନ୍ଦ୍ରେ ହରୁଥିଲେ  ବେଣୀଠାରୁ ଖାସା
 କାଞ୍ଚିନେ କେନ ଅସ୍ଥୁଳ ,
ତ ମଧୁର ପ୍ରେମ—ଚରଣ ସେ, ଯେ ରଣେ
 ଅନୁସ୍ୱେଗେ ପୁଂସ ନାରୀ
ଏକାଙ୍ଗୁ ଅନେକ  ଜଣିବାକୁ ଯାଇ,
 କୃତାର୍ଥ ହୁଅନ୍ତ ଦାର !
ହାର୍ ଯାଉଥିଲା  ଅନୁକ୍ଷଣେ ପୁଂସ,
 କର୍ଣ୍ଣେ ଥିଲା ପ୍ରମଦା ,
ଅବଳା ପ୍ରବଳା  ନୃନନ୍ତୁ କ ଏଥି
 ପୁଷ୍ଟି ସ୍ଥୂଯ—ବରେ ସଦା ?
ସୁନ୍ଦର ସୁନ୍ଦରୀ —  ମଣି ଏକ୍ରମରେ
 ସନ୍ତୁର ପ୍ରେମ—ସରେଛ
କଣ୍ଠାଇଲେ ହିଛ —  ଧନ,ମାନ ଦେବା
 ମହାଶଙ୍କା ବନ୍ଧ ଛିନ୍ନେ ,
ମଧୁର୍ ଯୋମନ୍ତ  ସ୍ନେହପଥ ଗୁପ୍ତ—
 ପ୍ରୀତିଠି ବଡ ପ୍ରମାଦ !

ନର ଭାଗ୍ୟ ଏତେ   ଲୋକଙ୍କୁ ନସହୁ
ଭୁଆଏ ଦୈବ ବିବାଦ ,
ଏହା ଜାଣି ମହା — ସତର୍କେ ବେଢ଼ଏ
ଜନେ ରକ୍ଷୁଥିଲେ ଭିନ୍ନ ,
ଯୋଦ୍ଧାଗଣ ଥିଲେ   ମହାଯତ୍ନେ ଯେତେ
ଚିତ୍ର ବିକାରର ଚିହ୍ନ ,
ସମ୍ମୁଖର ଯେତେ   ଚିହ୍ନମାନ, ଗୁମ୍ଫ-
ମୁଖର ନୀରବ ସାକ୍ଷୀ
ଲିଖାଗଣ ଥିଲା   ଅତିଯତ୍ନେ ନଶା-
ଶେଷେ ଶିଳ୍ପ ହରଣକ୍ଷୀ ,
ଶ୍ଳଥ କେଶପାଶ,   ଢଶୀର୍ଣ୍ଣ କଣ୍ଠିର
ସୁରଭି କୁସୁମ ମାଳ ,
ରଚନ ଫଳଙ୍କେ   ବଦଳନ୍ତ କ୍ଷେଯ
ସୁଖ ନଥାଇ ବାଚ୍ଛିଲ ,
ସଞ୍ଚିତୁ ଥିଲେ ସେ   ଅତି ସାବଧାନେ
ରମଣୀ—ମଣି; ରମଣ ,
ଯୋଦ୍ଧାନ୍ତୁ ଯତନେ   ଯଥ ଦୋଷି ଜନେ
ନିଜ ଦୋଷ ନିଦର୍ଶନ ,
ଏମାନ ଅଚର   ସ୍ପଟରୁସ୍ତି ଫେଢ
ଗସ୍ପୃଜ—ମନ୍ଦର—ଦ୍ୱାର .

ଦୃପ୍ତ ଅବଳା — କେଶି — କାନ୍ତଙ୍କେ
ଦେହଗଣ ଥାଇ ନ ହାର ,
ଯନ୍ତ୍ର ଯତନେ ଲୁଚାଇଲେ ହେଲେ
ଲୁଚିବ କି ଏ ରହସ୍ୟ ?
ଶତ ଦ୍ରବ୍ୟରେ ବନ୍ଧି ଘୋଡ଼ାଇଲେ, ପୂତି
ବାହାରିବ ସେ ଅ ଗନ୍ଧ,
ଅନ୍ତଃପୁରେ ସେହ୍ନ ଗୁପତ ଚରିତ
ସଖୀଙ୍କ ଠାରେ ପ୍ରକଟ
ହୋଇଗଲା ସଖୀ — ଠାରୁ ଅବରୋଧେ
କ୍ରମେ ତା କେଳି ଚହଟେ ,
ଶାନ୍ତ ମୁଖୀ ଜନ — ଗୂଢ଼ ପ୍ରେମେ କଥା
କର୍ଣ୍ଣେ ଗଲା କର୍ଣ୍ଣାନ୍ତର ,
କ୍ରମେ ଏ ରହସ୍ୟ ଜାଣିଲେ ଉତ୍କଳ-
ଥତ୍ଖଣ୍ଡ — ଦଣ୍ଡଧର ,
ଅଚମ୍ବିତ ବଦନେ ସ୍ଥବିର ନକ୍ଷୁଙ୍କ
ଯଗି ଲୋମା ହଂସଖୁରେ
କପଟ ରୂପୀକି ନେଇଗଲା ନୃପ —
ଆଦେଶେ ନୃପ ଗୃହରେ ,
ସ୍ତ୍ରୀବେଶ ଉତାରି ନିଜ ବେଶେ ତାକୁ
କଲା ଉର୍ଦ୍ଧ୍ୱ ଉପଗତ ,

ରୂପ ଦେଖି ମୁଗ୍ଧ — ସଭାଜନେ ହେଲେ
ଆଲେଖ୍ୟ ପିତୁଳା ହତ ,
ଏ ସଙ୍କଟେ ସୁଦ୍ଧା ଯୁବାର ମୂରତି
ଅଟଳ ଧୀର ଗମ୍ଭୀର ,
ଦ୍ରୁପଦ ସିନା ସେ ହୀରର ପରଖେ ,
ହୀରର ପରଖ ନୀର ; (୧)
ସେ ଶାରଦ—ଚନ୍ଦ୍ର — କମଳ ବଦନ,
ନବୀନ-ଜ୍ୟୋତି ଚାହାଣି ,
ସେ ବିଶାଳବକ୍ଷ, ଦୀର୍ଘବାହୁ ଯୁଗ,
ସେ ମତ୍ତ-କେଶରୀ ଠାଣି,
ସ୍ୱଗତେ ବଖାଣି କେତେ ସଭାଜନେ
କହିଲେ ହର୍ଷ ହୃଦେ
"କହିଥିଲ ବଡ଼ ଏରୂପ କି, ଅହା,
ନହିବାକୁ ଏ ପ୍ରମାଦେ ?
ଅତ କରୁଁ ଅସେ, ସୁନ୍ଦରୀ — ମନାରୁ
ଧୃତ ପଡ଼େ କ୍ଷଣେ ଖସି

---

(୧) କିମ୍ବଦନ୍ତି ଅଛି ଯେ ପ୍ରକୃତ ହୀରାର ପରୀକ୍ଷା ଏହି ଯେ ତାହା ଜଳରେ ମଗ୍ନ ହେବ ନାହିଁ । ପ୍ରକୃତ ହୀର ଦ୍ରୁପଦରେ ଏବଂ ପ୍ରକୃତ ହୀରା ଜଳରେ ବୁଡ଼େ ନାହିଁ ।

ଯାହାକୁ ଦେଖିଲେହ      ପୁରୁଷ ବୋଲାଏ,
    ଏହସେ ପୁରୁଷ ଶଣ୍ଢୀ !
ହୋଇଥିବ କେଉଁ      ପ୍ରସିଦ୍ଧ କୁଳର
    ଅପ୍ରସିଦ୍ଧ ଏ ଅଙ୍କୁର ,
ଅସିଥିଲୁ କେଉଁ      ଯଜ୍ଞଖଣ୍ଡ କରୁ
    ଜନ୍ମ କରିବେ ଛଥର ,
ଜେମା ପାଇଁ ଯୁବା      ଯୁବା ପାଇଁ ଜେମା
    ଗଢିଥିଲ ଯେବେ ବିଧି,
ଅବଧିରେ କାହିଁ      ମିଳାଇ ଦେଲନ୍ତି
    ପଣ୍ଡକେଲି ଜଡ ବିଧି ?
ଅବାଟରେ ଯୁବା      ଯାଇ ଜେମାମଣି
    ଲକ୍ଷ୍ୟଭ୍ର ନଥିଲ ହୁଡ଼ି ,
ନାହିଁ ସବୁ ଗୁଣ      ପିଟ ଶିଳା ସେହୁ
    ଅବଧି—ଦୋଷରେ ବୁଡ଼ି”
ବଧ—ଦଣ୍ଡ—ଅଜ୍ଞା      ବୃଦ୍ଧ ମୁଖୁଁ ଶୁଣି
    ତରୁଣ ମୌଳି—ମଣ୍ଡନ
ନିର୍ଭୟେ ବଦନେ      କରପତ୍ର ଯୋଡ଼ି
    ବହିଲ ଗିର ଏସନ
“ହେଦେବ ! କ୍ଷତ୍ରିୟ—କୁଳେ ଜାତ ମୁହିଁ
    ସଦା କ୍ଷାତ୍ର ଧର୍ମାଶ୍ରୟୀ,

କ୍ଷତ୍ରିୟ-ମରଣ ଅଜ୍ଞା ଦେଉ ମୋତେ
ଏତିକ ପାଦେ ଗୁରୁବର ,
ଗୃହ ଅସ୍ତ୍ରାଗାରୁ ଅଜ୍ଞା ଦେଉ ମୋତେ
ଆୟୁଧ, ବର୍ମ୍ମ, ବାହନ,
ରାଜ ବାହିନୀରୁ ସପ୍ତବୀର ମୋତେ
କରନ୍ତୁ ରଣେ କଥନ ,
ପୂର୍ବ ଏମନ୍ତେ ମୋର ବାଞ୍ଛା, ଦେବ
ଦୁଷ୍କୃତର ପ୍ରାୟଶ୍ଚିତ୍ତ ,
ଏତିକ ପ୍ରସାଦ ଅଜ୍ଞା ଦେଉ, ପ୍ରଭୋ
ଉଜ୍ଜ୍ୱଳ ପଦ୍ମ—ଧିପତ୍ୱ,
ସଜ୍ଜନ—ନେତ୍ରୁ ନୀରବେ ଏକାଳେ
ଝରୁଥିଲା ଅଶ୍ରୁ-ଧାର ,
ନବୋଢ-କାନନେ ଉଷ୍ଣ ତରୁ ପତ୍ରୁଁ
ନିଶାନ୍ତେ ଯଥା ତୁଷାର ,
ସଜ୍ଜନ ମନ ଜାଣି ପ୍ରାତଃକାଳେ
ରଣ ଲାଗି ଆୟୋଜନ
କରିବାକୁ ଚମୁ—— ପଛଙ୍କି ଅଦେଶ
ବହିଲେ ଗୃଏ ତକ୍ଷଣ ,
ସପ୍ତ ଅଶ୍ୱବାର ବାହିନୀରୁ ବଛା
ହୋଇ ଲଭିଲେ ଅଦେଶ

ଶସ୍ତ୍ରେ ସନ୍ନଦ୍ଧୋଇ  କରିବାକୁ ରଙ୍ଗ-
ପ୍ରାଙ୍ଗଣେ ପ୍ରାତେ ପ୍ରବେଶ ,
ଫୁଲ୍ଲ ବେଗେ ଏ  ବାର୍ତ୍ତା ପ୍ରସରିଲା
ଏ ନଗରେ କିବା ଗ୍ରାମେ,
ସନ୍ଧ୍ୟାରୁ ଶୁଦ୍ଧାନ୍ତେ ବଢେ ହେଲେ ସ୍ୱଏ
ଯାମିନୀ—ଦ୍ୱିତୀୟ—ଯାମେ,
ଯୋଗଣାନ୍ତେ ଦ୍ୱଏ  ରଚନ—ପର୍ଯ୍ୟଙ୍କେ
ହୋଇ ନିଦ୍ରା—ଅଭିଭୂତ
ନିଶା ଶେଷ—ଯାମେ  ସ୍ୱପ୍ନୁ ଉଠିଲେ
ସ୍ୱପନ ଦେଖି ଅଦ୍ଭୁତ ,
ହେମାଙ୍କୁ ସୁବେଶ  କରାଇବା ଲାଗି
ସତ୍ୱରେ ହେମା ସଜନୀ—
ସ୍ତ୍ରୀଙ୍କୁ ଡକାଇ  ମଦା ବ୍ୟଗ୍ରେ ଅଣ୍ଣ
କହିଲେ ଭୂପାଳ ମଣି ,
ସଜନୀ ସହିତେ  ଗୃଣୀଦଳ ପୁଣି
ହେମାଙ୍କୁ ନେଇ ସହଣେ
ଉତ୍କେହେଲେ ଯାଇ  ପ୍ରତ୍ୟକ୍ଷ ସ୍ୱୟମ୍ବ-
ମଞ୍ଚେଶେ ରଣ—ପ୍ରାଙ୍ଗଣେ,
ପ୍ରତ୍ୟକ୍ଷ—ଗୃହିଣୀ —— କରୁଣା ପର୍ବେ
ହେମାର ଏକାନ୍ତ ଛାଡ଼

ଦେଖିଥିଲେ କଣ୍ଟେ      ତରଳ ଯାଅନ୍ତ୍ରା
ଚ ଗ୍ରୀବା ଚ ଅବା ପଦ !
ଲାଇଥିଲା ଶିଶୁ——ଷାଉଳୀ—ଲୋହନ
ନାଉଚେ ଗେଡ଼ନେ ଫୁଲ ,
ଶିଥିଲ ପଗ୍ରଣ      ହୋଇଥିଲା କଣ୍ଠେ
କାଶାନ୍ତ—ଗଙ୍ଗାଶିଉଳ !
ଝଷୀ ଜରେ କର      ଘଉଠିବ ହେଉ
ମର୍ମେ ଦୁଃଖ କୃଶୋଦସ୍ଥ ,
ନୈରାଶ୍ୟେ ନାବବ      ଝଣ୍ଟଲ ଅଲେ ଷ୍ଟ୍ୟ-
ଲକ୍ଷିତ—ପ୍ରତିମା ପର ,
ସୁରଡକପଦୁ      ବ୍ଲୁଣ୍ଡ୍ ହେଲେ କନେ
ଦେଖିବାକୁ ସେ ସମର ,
ହଗିକେ ଦଶିଲ      ଷ୍ଟେ ସ୍ଥଳୀ କ୍ଷବାଙ୍କେ
ମନୁଷ୍ୟ ଶୋଣ—ସାଗର ,
ଭସ୍ତୁତ ସେ ରଙ୍ଗ — ଭୂମି ହୋଇଥିଲା
କ୍ଷତରେ ଦୁଃଖେ ବିକ୍ଷିପ୍ତ ,
ଛଗୁଥିଲ ଥିଲେ      ଭଉଛରେ ଅଙ୍ଗେ
ଶାସ୍ତ୍ରେ ହୋଇ ସୁସଜ୍ଜିତ ,
ଭଣରିଙ୍କ ନାଦେ      ଥରେ ଭଙ୍ଗଷ୍ଟ୍ରଲେ
ଉଠିଲ ଅଶ୍ୱ ଯଯାତ ,

ଦୈତ୍ୟ ଯୁଦ୍ଧ ଲାଗି      ସଜ୍ଜିତ ହୋଇଛ
ଅଇଲେ ତାରକା - ସୁତ ?
ଅଥବା ମାନସେ      ପଦ୍ମବନୋନ୍ମାଥି—
ଦ୍ୱିରଦ ଦୁଂଦ୍ଧଷେ ନାଗେ
ଶଇଲୁଁ ଖସିଲ      ସିଂହ - କିଶୋରକୁ
ତାଙ୍କୁ ସଂହାରିବା ଲାଗି ?
ସ୍ୱର୍ଣ୍ଣବର୍ଣ୍ଣ ବର୍ମେ      ବର୍ମିତ, ଧବଳ—
ତୁରଙ୍ଗ ପୃଷ୍ଠେ ଆରୂଢ଼ ,
କାବ୍ୟଭାଗ୍ ପ୍ରାଏ      ଘସ୍ମର ଲଲାଟେ
ଝଟକେ ଦବ୍ୟ ମହୂଢ଼ ,
ଗୃହୁ ଛାସେ ରଢ଼   —   ପରଧି ଅଗ୍ରେ
ଫଳକ ଦୃଷ୍ଟି ବର୍ତ୍ତୁଳ ,
ସ୍କନ୍ଧେ ମହାଶୂଳ      ଲଞ୍ଜାଭାସ୍ୱ କଷେ
ନାଶିବାକୁ ବୈରିକୁଳ !
ସମକାଳେ ଅଶ୍ୱେ      ଶସ୍ତ୍ରେ ସୁସଜ୍ଜିତ,
ବର୍ମିତ ହୋଇ କଞ୍ଚୁକେ ,
ସପ୍ତ ପ୍ରତିଯୋଧ      ପ୍ରବେଟିଲେ ମାଝ
ବଷଦ ମଲନ ମୂଖେ , .
ଅଶ୍ୱୁ ଅବତରି,      ଭୂଷଲେ ଅସ୍ତ୍ରଧ
ଥୋଇ, ପୋତି ବେନ୍ନକର,

ବୋଇଲେ "ହେଦେବ, ଅବଧାନକେତେ,
ଉତ୍କଳ—ମଣ୍ଡଳେ —ଶ୍ବର,
ଦୁଃସ୍ୱପ୍ନ ଦେଖିଲୁଁ ସର୍ବେ ନିଶାଶେଷେ
ଦର୍ପୋଦ୍ଧତ ଉତ୍କ୍ଷିପ୍ତ
ଏକ ଧରେ ଏକ ଅସି ଆକ୍ରମିଲେ
ସପ୍ତ ମତ୍ତଦନ୍ତୀ-ଦଳ
ଏ ଯୁବା ବୀରଙ୍କୁ ମାତ୍ର ଅସ୍ତ୍ରବ୍ୟସ୍ତେ
ସର୍ବେ ପଳାଇଲେ ଡର,
ଶୀର୍ଷି ଚଢଦେଲା ରଙ୍କୁଅସି ଏକ
ଅଦ୍ଭୁତ ବ୍ୟାଘ୍ରକେଶରୀ,
ଗ୍ରୀଷ୍ମାନଳ-ବର୍ଣ୍ଣ ଉଡୁଥିଲା କବା
ସେ ସିଂହର ଦୃଷ୍ଟି ପାତେ,
ତପ୍ତ ଲୌହଖଣ୍ଡ ସ୍ଫୁଲିଙ୍ଗ ଯେସନେ
ଛୁଟେ ଅସ୍ତ୍ରେଘନ ଘାତେ,
ସେ ଭୈରବରଡ଼ ଶୁଣିବେ ମହା
—ନିଦ୍ରିତର ନିଦ୍ରାଭଙ୍ଗ,
ଅଦ୍ୟାପି ସେରବ ସ୍ମରି କ୍ଷଣେ କ୍ଷଣେ
ଥର ଉଠୁଥିଛି ଅଙ୍ଗ,
ଶ୍ରୀମନ୍ତ ଆଜ୍ଞା ହେଲେ ଏହିକ୍ଷଣି ରଙ୍ଗେ
ଯୁକ୍ତିବୁଁ ଅଟେ ସର୍ବଥା,

ମା'ଣ ଏକା ସ୍ୱପ୍ନ     ସମସ୍ତେ ଦେଖିଲୁଁ
ଏବଡ ଅଦ୍ଭୁତ କଥା !"
ମନ୍ତ୍ରୀ ଅବସର     କହନ୍ତେ ମୃଗେନ୍ଦ୍ର
ବଢେଇହୋଇ ଅହଙ୍କାରେ ,
ଜନତାକୁ ଚାହିଁ     "ଶୁଣିଲଣ ସର୍ବେ
କହୁଲେ ଯା ସପ୍ତବୀରେ ,
ଯା କହୁଲେ ବୀରେ     ସ୍ୱପ୍ନ ଦେଲେ ସୁଦ୍ଧା
ନୁହଇ ତୁଚ୍ଛା ସ୍ୱପନ ,
ଏବୀର—ଘଟଣାର     ଅଜଣା କେବେହେଁ
ନୁହନ୍ତି ପ୍ରାକୃତ ଜନ ,
ଗତ ରାତ୍ରେମୁହିଁ     ଦେଖିଲି ସ୍ୱପନେ
କରାଳ ରୂପୀ ଦସ୍ୟୁକ୍ଷ
ଅକ୍ରମିବାଲଗି     ମୋତେ ଝୁଲି ଝୁଲି
ପୁନଃ ପୁନଃ କଲା ଲକ୍ଷ୍ୟ ,
ସେବକ୍ର--ଦ୍ୱବର ,     ଧୂସର-କେଶର ,
ଘୂର୍ଣ୍ଣିତ ରକ୍ତ ଲୋଚନ
ଦେଖି ହାଟେ ମୁହିଁ     ମନେ ମନେ ବେଣୀ-
ମାଧବେ ନେଲି ଶରଣ ,
ଦେବୀଙ୍କ ସ୍ମରଣେ     ସୌମ୍ୟ ମୂର୍ତ୍ତି ଧରି
ଭଗ୍ନ କେଲ୍ଲା ସେ କେଶରୀ

ତାପୃଷ୍ଠେ ଦେଖିଲ ତ୍ରିଶୂଳ-ଧାରିଣୀ
ମୁକ୍ତ ବେଣୀ ଶଙ୍କରୀଙ୍କୁ ,
ମାତଙ୍କ ଶ୍ରୀମୁଖଁ —ସ୍ନିଗ୍ଧଜ୍ୟୋତିମୋର
ହୃଦଁ ଦାନ୍ତି ପାପ—ମଳ
ସେହିକ୍ଷଣି କର ଦେଲା ହୃଦ ଶବ୍ଦ—
—ଛଟିକା ପ୍ରାଏ କମ୍ପିଲ ,
ନଛେ ପୁଷ୍ପାକର ସେ ଦିବ୍ୟ ସୌରଭ
ଘ୍ରାଣି ନଥିବେ ସ୍ୱପନେ ,
ଛୁଅ ଗୃଗ , ପୁଣି ଛୁନ୍ଦିଣ ସ୍ୱଗିଣୀ
ମୂକବେଦେବେସେ ବଚନେ ,
ଅପୂର୍ବ କଥା ସେ, ମର୍ତ୍ତ୍ୟେ କେବେ ନର
ନୟନ , ନାସି , ଶ୍ରବଣ
ଦେଖି ଘ୍ରାଣି-ଶୁଣି ନଥିବ ତାପୋଷ,
ସେ ସୌରଭ, ସେ ବଚନ,
ବୋଇଲେଜନନୀ "ବୈତରଣୀତଟେ
ଅଟେ ମୋର ଅଧିଷ୍ଠାନ ,
ବରଜା ଦେଖ ମୁଁ , ଅସିଲୁ, ବାଳୁତ,
ମନାସି, ତୋର କଲ୍ୟାଣ ,
ସପ୍ତ-ଅଶ୍ୱବାର ନଯୋଗିଲୁ ଅଙ୍ଗ
ତୋହର ମହା ବୈଧ-ଭାଗୀ

ଅସମ-ସଂଗ୍ରାମେ    ଭକତଙ୍କୁ ମୋର
    ରଙ୍ଗେ ସଂହାରିବା ଲାଗି ,
ଏହି ଯେ କେଶରୀ,    ଯାସ୍ନୁରଣେ କମ୍ପେ
    କଣ୍ଠ ପ୍ରଭଞ୍ଜନ କାଳ ,
ନଜାଣିଲୁ ବକ୍ର-    -ଚାଲି ରୂପେ କରେ
    ଯୁବାଙ୍କୁ ସଦା ଉଦ୍ଗାଳ ,
ଏକେଶରୀ ଥାଉଁ    ବାର ଜଶୋଭର
    ଦାପଦ କର-କେଶରୀ
କାର୍ଯ୍ୟେ ଥାଉ, ରକ୍ଷା    ନାହିଁ ତାଠାରେ
    ମାନସେ ଦ୍ରୋହ ଅଟଇ ,
ଯଯାତି ଅଟଇ    ମଗଧ—ମଣ୍ଡଳ-
    ନରେନ୍ଦ୍ର ଜ୍ୟେଷ୍ଠ କୁମର ,
ରୂପେ, ଗୁଣେ, କୁଳେ    ଶୀଳେ ସବୁମତେ
    ଲଳନାର ଯୋଗ୍ୟ ବର ,
ମୋର ଇଚ୍ଛାବଳେ    ଉତ୍କଳ ମଣ୍ଡଳେ
    ଅସିଛୁ ଯୁବା—ରତନ ,
ପୁତ୍ର-ରୂପେ ପୁଣି    ଯାମାତା ରୂପରେ
    କରନ୍ତୁ ତାକୁ ଗ୍ରହଣ ,
ଭକ୍ତ-ମଣି ମୋର    ଅଟଇ ନୃମଣି ,
    ପୁରୁଷ-କୁଳ-ଲଲାମ ,

ଅପ୍ରଧୃଷ୍ୟ ରଣେ ଅସ୍ତ୍ର କଉଶଳେ ,
ଅଗାଧ ବୀର୍ଯ୍ୟର ଧାମ ,
ଅଖିଳ ଉତ୍କଳେ ସ୍ଥାପିବ ଯଯାତି
କୀର୍ତ୍ତି-ଗୃହ ଅନଶ୍ୱର ,
ନଦୀ ତୀରେ ମୋର ଅଧିଷ୍ଠାନ ବନେ
ରଚିବ ନୂତନ ନଗର ,
ହେବ ଏ ଅବନୀ ଯଯାତିର ଯଶ—
ଗୀତର ପ୍ରେକ୍ଷା-ସ୍ଥଳୀ ,
ଯୁଗେଯୁଗେ ଏହୁ ଯଯାତିର ଯଶ
ଗାଇବେ ହର୍ଷେ ଉତ୍କଳୀ ,
ଯଯାତିର କୀର୍ତ୍ତି— ପାଦ ପ୍ରକ୍ଷାଳିବେ
ଅମ୍ବୁରାଶି ନିଜ ନୀରେ ,
ମୋ କୀର୍ତ୍ତି ପିନ୍ଧିବ କଣ୍ଠ—ସ୍ୱରୂପେ
ଶୈଳ ସ୍ତମ୍ଭ ନିଜ ଶିରେ ,
ଏକ ମୁଖୁ ଭେଦି ନଭଃ ପରଶିବ
ଯଯାତି କୀର୍ତ୍ତି ଲତିକା ,
ପୁଷ୍ପ ରୂପେ ଯାର ଅର୍ପିବେ ଗ୍ରହ—
ନକ୍ଷତ୍ର ତାରା ମାଳିକା ,
ଚକ୍ରବର୍ତ୍ତୀ ହୋଇ ମଣ୍ଡିବ ଏଣିକି
ଏହୁ ଯଯାତିର ବଂଶ ।

ଦେବ ଯାର ଯଶ—  ପ୍ରସୂନ—ସ୍ତବକ
ଦିଗଙ୍ଗନା ଅବତଂସ ,
ମହାଦରେ ଏବେ  ସୁଧା—ବଂଶଧର—
ଗୀତଛ—ମାଳା ଅମଳା
ମଣି-କାଞ୍ଚ-ରୂପେ  ନଭମେ ଫିଙ୍କବେ
ସଉଦ୍ଵର୍ ଚନ୍ଦ୍ରୋଫୁଲା,
ଯଥାକାଳେ ହୋଇ  ଏ ମହା ବଣର
କୀର୍ତ୍ତି-ମୁଦେ ସମ୍ମୁଜ୍ଜ୍ୱଳ ,
ନାନା ଦେବ ଦେବୀ—  ଅଧିଷ୍ଠାନେ ମଣ୍ଡିତ-
ଦୈବ ଦେବ ଉଜ୍ଜ୍ୱଳ ,
ରତନ ଲୋଡନ୍ତ୍ର  ଯବନେ ମାନବେ
ନାନା ଦୂର୍ ଦେଶେ ଯାଇ ,
ଅଯତନ ଲବ୍ଧ  ସେ ରତ୍ନ କସିକୁ
ତୁଚ୍ଛ ଫିଙ୍ଗି ଦେବା ପାଇଁ ?
ସବୁ ଜନ ଅବେ  ପ୍ରାଣେ ଭକ୍ତେ ତୁଷ୍ଟି
ଜନନୀକୁ ସନ୍ଧ୍ୟା ଦାନ ,
କରବୁ ଏ ଜାତ-  ସ୍ଵଦେଶକୁ , ଯେବେ ତୁ
ମନାସୁ ନିଜ କଲ୍ୟାଣ ,
କରତୁ ଏକ୍ଷଣି  ବଣ୍ଡ ଅଯୋଜନ
ମୋର ଆଜ୍ଞା ଶିରେ ଧର ।

ଲଭେତ ମୁଁ ଶକୁନ   ଦେବ ଏ ଦ୍ୱାଦେ
    ମାୟାରୂପେ ଅବସର ”
ସ୍ୱଚ୍ଛାଙ୍କ ବଚନେ   ଜନଘାରୁ ଉଠି
    ମହାହର୍ଷ — କୋଲାହଳ
ପ୍ରତିଧ୍ୱନି-ଯୋଗେ   ପୃଥୁଲଭା ଭଙ୍କ
    କମ୍ପାଇଲା ରଙ୍ଗ ସ୍ଥଳ ,
ହର୍ଷି ଦକ୍ଷ୍ମର   ଦେଲ ଉତ୍କଳେଶ-
    କଣୋଷୀ — ଚନ୍ଦ୍ର ବଦନ ,
ଘର୍ମାକ୍ତେ ମୟୂରୀ   ଶୁଣିଲକ ; ଅହା ,
    ନବ ଜଳଧର ସ୍ୱନ ?
ପଣସର ଶର —   ମଧ୍ୟାହ୍ନେ ଯେସନେ
    ଦୁଃସହ ଗ୍ରୀଷ୍ମେ ଥିଲେ ,
ଲଟୂଥାଇ ବୃକ୍ଷ-   କୋଟରେ ହିଙ୍କାଶ୍ୱ ,
    ଗୃଢ଼ବଳୀ ବୃକ୍ଷ ଚୂଳେ ,
ଅନଳ—ଜିହ୍ୱାରୁ   ଫୁଲା ବାହାରଇ
    ଉତ୍ତପ୍ତ ମେଦିନୀ ଅଙ୍ଗେ ,
ଲିଣ୍ଡାଭିରୁ ସନ୍ନି—   ଜ୍ୱବରେ ଧଦେବଇ
    ଦେହୁଣ ଥାନ୍ତ୍ର ବହଙ୍ଗେ ;
ବାତ ସ୍ତମ୍ଭ ଯୋଗୁଁ   ଗୋଟିଏ ପନ୍ନଗ
    ହେଲେ ନାହିଁ ବୃକ୍ଷ ଡାଳେ ,

ବାଷ୍ପ-ଅବରଣେ   ଢଗୁଥାଇ ଗିରି
ଧୂସରିତ ଚନ୍ଦ୍ର ଭାଲେ ,
ମଧ୍ୟାହ୍ନ-ମଉନ   ଭାଙ୍ଗେ ଏକା ସେହୁ
ଝିଙ୍କାରି ଗୃହକୀ ସ୍ୱନ ,
କାହିଁ କାହିଁ ଅବା   ଭନ୍ତ୍ରତୀ-କୁସୁମେ
ମଧୁମକ୍ଷି-ଗୁଞ୍ଜରଣ , ( ୧ )
ଏକାଳେ ଅମ୍ବର   ଦେଖ ଟି, ନୀଳିମାରେ
କଳା ଭ୍ରମରକୁ ଜିଣି ,
ଜଳ ପୂରେ ପ୍ଲାବି   ଦେଲେ ଅବନୀକୁ
ବଳାହକ କାଦମ୍ବିନୀ ,
ଯାହାରେ ମଣ୍ଡୂକ   ଭାଷାର—ଉପାନ୍ତେ
ବାଉଁସ ବନେ ତାଣ୍ଡବ ,
ନାନା ଭାବେ ଗର୍ବ   ଜଗତେ ଘୋଷନ୍ତି
ନବ ନୀରେସ୍ରବ ସୁଖ ,
ଅପରାହ୍ଣଭାର   ନୀଳ ବର୍ଣ୍ଣେ ବୋଝା
ହେଲା ପ୍ରାଏ ଦୃଶେ ଗିରି ,
ନୟନ ରଞ୍ଜନ   ତରୁ ବଲ୍ଲରୀର
ପ୍ରଫୁଲ୍ଲ ଶ୍ୟାମଳ ଶିର ,
ପ୍ରକୃତିର ଧୂର୍ତ-   ମ୍ଳାନ ଛବି ଯାଏ

( ୧ ) ବେଲୁନ ଗ, ଭୁ ଏହୁ ସମୟରେ ଫୁଲଫୁଟେ ।

ପାଲଟି ଯଥା ପଲକେ,
ପାଲଟିଲ ତେମା    କାନ୍ତି ସେହି ମଠ
ଯାଉଦୁଁ କ୍ଷଣେ ଜନକେ ,
ଆନନ୍ଦ ସଲିଳେ    ପୂରିଗଲା ଭାବ ,
ହୃଦର ଶୁଷ୍କ—ସରସୀ ,
ଶୋକର ନିଦାଘ—    ଦଗ୍ଧ-ଆଶା-ବନେ
ଅମୃତ ଗଲା ବରଷି ,
ହୃଦୟ ଉଚ୍ଛ୍ୱାସ    କର ଯାପି ଶ୍ୱାସେ,
ସ୍ନିଗ୍ଧ ନେତ୍ରେ ବାଳା ଗୃହୁଁ
ସୁଖ୍ଯାନନ୍ଦୀ ପ୍ରାଣ—    ଚ ବାନ୍ଦ୍ରବୁ ଦେଲା କି
ହୃଷ୍ଟ ସ୍ରୋତେ ଅବଗାହି ?
ଚୂର୍ଣ୍ଣା ଦେଖେ ଲଜ୍ଜା—ନମ୍ର ମୁଖେ ତାନ୍ତେ
ଓଢ଼ାଇଲା କୃଶୋଦରୀ ,
ଗୃହ୍ନା ଦେଖେ ଯୁବା    ଚେମା ପାଶେ ଉଷ୍ଣ
ହେଲା ଅଶ୍ରୁ ଅକ୍ଷର ,
କହ ନୁହିଇ କି    ସୁଷମା ବହୁଲେ
କେଳିପାଶେ ରହି ବେନି ,
ଖାପରେ ପାଞ୍ଚାଳ-    ସ୍ୱୟମ୍ବରେ କି ସେ
ଧନଞ୍ଜୟ ଯାଜ୍ଞ ସେନି ?
କମ୍ରା ସୀତା,ସୀତା—    ହୃଦୟ ଭଞ୍ଜନ

ବକ୍ଷ, ଚନ୍ଦନ ଘ୍ରାଣମ ,
କମ୍ରା ନଳ, ଦେଵୀ    ମର୍ଦ୍ଦି ସୌଦାମିନୀ-
ଭଗିନୀ—କୁଳ—ଲଲାମ ,
ପ୍ରୟାଗବନ୍ଧୁଁ    କହୁଲେ ଗୋସାଇଁ
" ବାବୁ, ମୋର ଗଣ୍ଡି ଧନ
ଯୋଗ୍ୟସ୍ଥାନ ଜାଣି    ତୋର ହସ୍ତେ ମୁହିଁ
ଦେଲି ଅଙ୍ଗ ସମର୍ପଣ ,
ପରମ ଭକତ    ତୁହି, ବନ୍ଧୁ, ଯେଣୁ
ଦଣ୍ଡେ, ଦଣ୍ଡ ଥାଜିଙ୍କର ,
ପତନ ଉଛିଲ—    ଧନ୍ ବେଲା ଏବେ
ତୋଯୋଗୁଁ ପଦ୍ମ୍ୟ ଭର ,
ନାଶିକୁଲେ ଧନ୍ୟା    ଏକନ୍ୟା ମୋହର,
. ନରକୁଳେ ତୁହ ଧନ୍ୟ ,
ମଣି କାଞ୍ଚନର    ଯୋଗ ଉଥଇଲା
ଦୈବଦୋଷ ସୁପ୍ରସନ୍ନ ,
ବହୁଦିନ ମୁହିଁ    ପାଳିଲ ଯତନେ
ଏ ଉତ୍କଳ ବସୁନ୍ଧରା ,
କର୍ଣ୍ଣମୂଳ ମୋର    ଅର୍ଚ୍ଚିଲାଣି ଅସି
ପଳଇ ଜନନୀ ଜସ୍ୱ ,
ଯୌତୁକ-ସ୍ୱରୂପେ    ତୋର ହସ୍ତେ ଦେଉ

ମୋର ଏ ଗୃହ ସମ୍ପଦ ,
ବାନପ୍ରସ୍ଥ ଧର୍ମ୍ମ ଆଜି , ବାରୁ ମୁହିଁ
ଧ୍ୟାଇବି ଶାଶ୍ୱତ ପଦ ”
ଏହା କହି ଦର୍ଶି ତେମା ଭର ଦେଲେ
ଯଯାତି—କରେ ନୃମଣି, .
ଫୁଲମାଳେ ବେଣି ହସ୍ତ ବାନ୍ଧି ହପ୍ରେ
ଉଠେ ଢଳେ ବେଦଧ୍ୱନି ,
ଭାଜିଲା ମଙ୍ଗଳ ବାଜଣା ଏତାଲେ
ଉପୁଜାଇ ଧର୍ମ୍ମହର୍ଷ ,
ତୁରୀ, ଭେରୀ, ଡକ୍କା, ଢୋଲ, ମଧୁରଙ୍ଗା
ଝର୍ଝର୍, ଝଗର୍ଝର୍ ,
ସହଚରୀ ସବ ହର୍ଷେ ହୁଳହୁଳି
ମଞ୍ଜୁ ଦେଲେ ଗୁଣୀ ଦଳ ,
ଯଯାତିର ସୁଖ ସଙ୍ଗୀତ ଗାଇଲେ
ଅନନ୍ତେ ବନ୍ଧ ସକଳ ,
ଜନତା ନୟନ ଏଦୃଶ୍ୟୁଁ ସହସା
ଫେରିଗଲା ଅନ୍ୟ ପାଶେ ,
ଚନ୍ଦ୍ରାଙ୍କରୁଁ ଉଠ ମିଳନ୍ତେ ଯେସନେ
ଝୁଲୁଲତ ଚୂଡ ଷାଷେ ,
ସହସା ଅପୂର୍ବ ଜ୍ୟୋତିରେ ଦ୍ୟୋତିତ

କେଉଁ ପ୍ରାଚୀ ନଭୋଦେଶ ,
ନବୋଦିତ ରବି ଉପରେ ଝଶିଲ
ଇନ୍ଦ୍ରଧନୁ ପରବେଶ ,
ବୃତ୍ତାଭାସାକାର- ବ୍ରହ୍ମାଣ୍ଡ ଭୁମର
ବରଷି ଦେଲେ ଟୁଲାଇ
ପତ୍ନୀ କାନ୍ତେ ବ ରଙ୍ଗରୁଣ ଘନ-
ବ୍ରଜେ ଦେଖାଇବା ପାଇଁ ?
ସେଡୁଯର ବଚେ ଦେଖ ସ୍ୱର୍ଣ୍ଣବର୍ଣ୍ଣ-
କେଶରୀର ଅବର୍ତ୍ତ ବ ,
ପଦ୍ମରାଗ-ଦ୍ୟୁତି ବର୍ତ୍ତୁଳ ଲୋଚନ
ନଖ ଦନ୍ତ ହୀରକାଭ ,
କୋଣ-କେଶରୀର ସ୍ଫୁରିତ-କେଶରୁ
ପ୍ରଭା ସ୍ଫୁରିତ ମନୋଲୋଭେ.
ସ୍ୱ ଶୈଳ-କାନନ ଧରଣୀକି ଶୋଭା
କଲା କି ସୁବର୍ଣ୍ଣ ଛଳେ ?
ସ୍ୱର୍ଣ୍ଣ ଅସ୍ତ୍ରଭଣ ପଡ଼ିଏ ଶୋଭିଲା
ପ୍ରବାହ ବେଳା ନଦୀରେ ,
ହୃଦୟର ସ୍ୱର୍ଣ୍ଣ- ଧନ ଅସେ ମଣିଏ-
ଦନେ ମିଶି ଚଳି କରେ !
କେଶରୀର ପୃଷ୍ଠେ ଦଉଡ଼ିଲେ ସ୍ଫୁରିଲା

ରଙ୍ଗ ଜ୍ୟୋତି ପଦ୍ମାସନ ,
ସେ ଆସନେ ଅସି     ପୁଞ୍ଜ ଦେଖି ଭୃଙ୍ଗ
ପଡ଼ିଲା ଜଳ ନପୂର ,
ଦୃଷ୍ଟିକ୍ଷମ ହେଲା     ଛଦ୍ମରୁ କେବଳ
ଉର୍ଦ୍ଧ୍ୱେ ମୁକୁଟର ଛବି ,
ଯହିଁରୁ ଥିଲା ଯେ     ଲଗନ ମୁକୁଟେ
ଲଳିତ କଳା ଐନ୍ଦବୀ ,
ଯହିଁରୁ ଥିଲା ସେ     ପ୍ରଭା ଅଗେ ପୁଣି
ଦୃଷ୍ଟି ଦୈତ୍ୟ-କୁଳ-ତ୍ରାସ
କରାଳ ତ୍ରିଶୂଳ-     ଦଣ୍ଡ ଚରଣାନେ
ତାପିତ-ହେମ-ସଙ୍କାଶ , ( ୧ )
ପଦ୍ମରାଗ-ପକ୍ଷ     ଇନ୍ଦ୍ରପ୍ରଭା — ଚକ୍ର
ସେପ୍ରଭା—ପୁଞ୍ଜ ଭାସ୍କର
ବରବଧୂ ଶିର     ପରେ ଉଡ଼ି ଗଲା.
ପଶ୍ଚିମେ ଅକୂଳ ପଥ ,
ପଲକ ମାତ୍ରେ ଏ     ସବୁକଥା ଦେଖି
ବିସ୍ମିତ ହେଲେ ସରବେ ,
ପଲକେ ସହସ୍ର     ଘଟଣା ଦେଖନ୍ତି
ସ୍ୱପନେ ଯେସନେ ମାନବେ ,

---

( ୧ ) ତପ୍ତସ୍ୱର୍ଣ୍ଣ - ସଦୃଶ ।

“ଜୟତୁଜୟତୁ ସିଂହ———ନାଦନ ଝରଛେ”
ବୋଲିସର୍ବେ ଉଚ୍ଚୈଃସ୍ୱରେ
ବୈତରଣୀ ତୀର— ବାସିନୀ ଦେବୀଙ୍କି
ପ୍ରଣମିଲେ ଭକ୍ତିଭରେ ,
ସର୍ବେ ହର୍ଷେ ହେଲେ ଗଦ୍ଗଦ ଯଯାତି
କେଶାଭାଗ୍ୟ ଶ୍ଳାଘ୍ୟ ମଣି ,
ଗାଇଲେ ବନ୍ଦିଏ “ଧନ୍ୟ ଭାଗ୍ୟବତୀ,
ଧନ୍ୟଭୂମି କେଶାମଣି ,
ଗୃହିଣୀ—ଗଞ୍ଜିମା ଯେଣୁ ଭୂଷ,ଧନ,
ଶୋଭର ସୁକୃତ ଗୁଣି·
ଯୋଗ୍ୟ ଏ ଶଶାଙ୍କ- ଗଞ୍ଜନ କୁମର
ଦେଖିଲେ ଉତ୍କଳ ବାସୀ !
ଦେବସେନା ସଙ୍ଗେ ମିଳିଲେକ,ଅହା,
ଦେବ ଶିକ୍ଷି—ଧୃତସ୍କନ୍ଦ !
ମହୋଦଧି—କେଶା ସଙ୍ଗେ ଅବା ପ୍ରଭୁ
ଜଗତ ଆନନ୍ଦ-କନ୍ଦ !
ଧନ୍ୟହେ ମଗଧ- ନରେନ୍ଦ୍ର ନନ୍ଦନ
ଶୂରେନ୍ଦ୍ର ସିଂହ ଯଯାତି ,
ଭୂମ୍ୟର୍ଥବର୍ତ୍ତିବେ ପ୍ରଘଟିଲ ଏବେ
ଉତ୍କଳର ଦୁଃଖରାତ୍ରି ,

ସୁଶିକ୍ଷା ତୁମ୍ଭଙ୍କୁ ଯାଚରୂପେ ଲଭି
ନୃପବାଳା ଗୌରୁଣୀଳା ,
ତୁମ୍ଭଯୋଗୁ ଚର୍ମ- ନୟନେ ଦେଖିଲୁଁ
ଏଅଦ୍ଭୁତ ଦୈବୀ ଲୀଳା ,
ରତ୍ନପ୍ରସୂ ସଦା ତୁମ୍ଭଯୋଗ୍ୟ ହେବେ
ରତ୍ନଗର୍ଭା ଏ ଧରଣୀ ,
ତୁମ୍ଭେଯେତେ,ବୀର, ଯାବତଜ୍ଞା ହେବ
ଉତ୍କଳ ଚୂଡ଼ା ମଣି ,
ଦେବୀଙ୍କ ବାହନ— କେଶରୀ-ପ୍ରସାଦ
ଅନୁକ୍ଷଣ ଶିରେ ଧର,
ଅରି-କରି—କୁଳ ମର୍ଦ୍ଦନ —କୁଶଳ
ତୁମ୍ଭେ ଯଯାତି କେଶରୀ ”
ବନ୍ଧୁଙ୍କ ବଦନୁ ସେହିନାମ ଧର
ଉଚ୍ଚେତୁଣ୍ଡ ସର୍ବଜନେ
“ ଯଯାତି କେଶରୀ” ” “ଯଯାତି କେଶରୀ”
କହିଲେ ହୃଷ୍ଟେ ସଘନେ ,
“କେଶରୀ” “କେଶରୀ” ଉଚ୍ଚେପ୍ରତିଧ୍ୱନି
ଗାଇଲା ପ୍ରତି ଝୁଡ଼ରେ
ବରୁଣା-ଗିରିରେ ପୂରବେ, ଅବର
ପଶ୍ଚିମେ ଗିରି—କନ୍ଦରେ ।

"କେଶରୀ" ଉପାଧି ଧରିବାର ମଣି
ପାଇଲେ ସୁଖେ ଉତ୍କଳ,
ଯଥାକାଳେ ଚୈତନ୍ୟ ଦେବାଙ୍କ ଉଦୟ
ଭାରତୀ ସବୁ ସଫଳ,
ଯଥାକାଳେ କଲେ ବିମଳାଙ୍କୁ ଯୋଗ୍ୟ
ରାଜସୁତେ ସମ୍ପ୍ରଦାନ,
ବୈତରଣୀ-କୂଳେ ଯଥାକାଳେ ହେଲା
ସୁରମ୍ୟ ପୁରୀ ନିର୍ମାଣ ।

---

ସମାପ୍ତ ।